# ମୋ ନିଜକଥା

ଯେଉଁମାନଙ୍କର ଲୁହ ଆଉ ହସ, ରୂପ ଆଉ ରସ, ମଧୁ ଆଉ ବାସ, ପ୍ରୀତି ଆଉ ଗୀତି ମୋର କଳ୍ପନା ବିଳାସକୁ ରସାଣିତ କରିଛି ......... ସେଇମାନଙ୍କ ହାତରେ ଟେକିଦେଲ ଏଇ 'ଗୀତି ଓ ଗଜଲ୍' ।

ଏଇ ପୁସ୍ତକରେ ସନ୍ନିବିଷ୍ଟ ଗୀତିଗୁଡ଼ିକ ମଧ୍ୟରୁ କେତୋଟି ଆଧୁନିକ, କେତୋଟି ପଲ୍ଲୀ ଓ କେତୋଟି ଭଜନ । ଗୀତିଗୁଡ଼ିକ ମଧ୍ୟରୁ ଅଧିକାଂଶ ଆକାଶବାଣୀ କଟକ, ସମ୍ବଲପୁର ଓ ଜୟପୁରରୁ ପ୍ରଚାରିତ । କେତୋଟି ମଧ୍ୟ ପତ୍ରପତ୍ରିକାରେ ପ୍ରକାଶିତ, କେତୋଟି ଗ୍ରାମ୍‌ଫୋନ୍ ରେକର୍ଡ଼ରେ ପ୍ରକାଶିତ ।

ଗୀତିକବିତା ଓ ଗଜଲ୍‌ରେ ମୁଁ ପ୍ରତୀକ, ରୂପକଳ୍ପ ଆଦିର ପ୍ରୟୋଗ କରିଛି । ପାଠକମହଲରେ ପୁସ୍ତକଟି ଆଦୃତହେଲେ ନିଜକୁ ଧନ୍ୟ ମନେକରିବି ।

ବିନୀତ
ନନ୍ଦକିଶୋର

# ସୂଚୀ

**ଗୀତି (ଭଜନ)**

## ଗୀତି (ଗଜଲ୍)

# ୧

ହେ ମୋର ପ୍ରଥମ ପ୍ରେମ ଯଉବନ ପ୍ରଥମ ସକାଳେ
ଜୀବନର ଅପରାହ୍ନେ ଆଜିବି ମୁଁ ତୁମ କଥାଭାଳେ ।୦।

ମୋ ପ୍ରେମିକା କବରୀରେ ତୁମେ ଥିଲ କଦମ୍ବ ସୁରଭି
ମୋ ପ୍ରେମିକା ଅଧରରେ ତୁମେ ଥିଲ ଗୋଲାପୀ କରବୀ
ତୁମେ ତ ଯମୁନା ହୋଇ ଝରିଥିଲ ମୋ ପ୍ରିୟା ଲୁହରେ ।୧।

ମୋ ମାନସୀ ମନତଳେ ତୁମେ ଥିଲ ପ୍ରଥମ ସପନ
ମୋ ପ୍ରେୟସୀ ପ୍ରୀତିସୁରେ ତୋଳିଥିଲ ପ୍ରଥମ କଂପନ
ଏବେ ଖାଲି ତୁମ ସ୍ମୃତି ନିଆଁ ହୋଇ ଏ ଛାତିରେ ଜଳେ ।୨।

୨

ସୂର୍ଯ୍ୟ ଉଠିଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଗାଆଁଆଢ଼େ
ଜହ୍ନ ଉଇଁଲେ ପ୍ରଥମେ ଚାହିଁବ ମୋ ପ୍ରିୟାର ଝରକାରେ ।୦।

ଆଷାଢ଼ ଆସିଲେ ପ୍ରଥମେ ଚାହିଁବ
ମୋ ପ୍ରିୟାର କୁନ୍ତଳକୁ
ଫଗୁଣ ଆସିଲେ ପ୍ରଥମେ ଦେଖିବ
ମୋ ପ୍ରିୟାର ଅଧରକୁ
ବିହଗ କାକଳୀ ପ୍ରଥମେ ଝରିବ ମୋ ପ୍ରିୟାର କଣ୍ଠ ସୁରେ ।୧।

ସାଗରର ଢେଉ ପ୍ରଥମେ ଧୋଇବ
ମୋ ପ୍ରିୟାର ପାଦଦୁଇ
ମଳୟ ଆସିଲେ ପ୍ରଥମେ ଖେଳିବ
ମୋ ପ୍ରିୟାର କେଶ ଛୁଇଁ
ଶ୍ରାବଣ ଆସିଲେ ପ୍ରଥମେ ଝରିବ ମୋ ପ୍ରିୟାର ଆଖି ନୀରେ ।୨।

# ୩

ସୁଷମା ଗୋ ତୁମ ଅଂଗେ ଭରା ମଧୁ ଜୋଛନା
ନୟନେ ତୁମର ବନ ହରିଣୀର ଚଂଚଳ ଆଖିର ନୀଳିମା ।୦।

ଓଠରେ ତୁମର ରକ୍ତ ଗୋଧୂଳି କବରୀରେ ଘନ ଆକାଶ
ପାଦର ନୂପୁରେ ଝରଣାର ଗତି ଶୟନରେ ମଧୁ ବିଳାସ
ପଲକ ଉଠିଲେ ଆଖିର ସାଗରେ
ଢେଉ କେତେ ଗଣି ହୁଏନା ।୧।

ଯେ ପଥେ ଯାଅଗୋ ସେପଥରେ ଭର କୋଟି ପାରିଜାତ ମହକ
ଅଧରୁ ତୁମର କଥା ଯେବେ ଝରେ ସେକି ଯାଦୁକରୀ କୁହୁକ
ମରୁ ବାଲୁଚରେ ତୁମ ଛାଇପଡ଼ି
ଭରେ ସବୁଜିମା ସୁଷମା ।୨।

# ୪

ସପନ ଛୁଏଁନା ମୋତେ
ତନ୍ଦ୍ରାବିତ ଆସେନା
ଭାବନା ଲହଡ଼ି ମୋର
ପାଦ ଚୁମି ଯାଏନା ।୦।

ଆକାଶରେ ଚାନ୍ଦହସେ
ତଳେ ହସେ କୁମୁଦିନୀ
ବସନ୍ତ ମହକି ଉଠେ
କୋକିଳର କୁହୁବାଣୀ
ମଳୟ ମର୍ମର ତାନ
କାନେବି ମୋ ବାଜେନା ।୧।

ସାହାରାର ମରୀଚିକା
ସାଗର ତରଂଗ ଛଟା
ଇନ୍ଦ୍ରଧନୁ ସାତରଂଗ
ଛାୟା ପଥ ନିହାରୀକା
କିଛି ମୁଁ ଜାଣେନା ଅବା
କେହି ମୋତେ ଜାଣେନା ।୨।

# ୪

ଯଉବନ ପିନ୍ଧାଇଛି ଆଖିରେ ନୀଳ କାଚ ଚଷମା
ନୀଳ ନୀଳ ଲଫାପାରେ ଲେଖିଛି ଚୋରା ଚୋରା ଠିକଣା ।୦।

କବରୀରେ ଇତିହାସ ଲେଖିଛି ଛାତିରେ ତା କୋଣାର୍କ
ଆଖି ନୀଳ ଦରିଆରେ ଫୁଟିଛି ଇନ୍ଦ୍ରନୀଳ ମର୍କତ
ଅଜନ୍ତା ମୁହଁଟି ଦେଖି ଲାଗୁଛି ଚିହ୍ନା ଚିହ୍ନା ଅଚିହ୍ନା ।୧।

ପ୍ରେମକୁତ କରି ସିଏ ସାଗର ମନ ସୁନା-ନଉକା
ରାତିର ସେ ପ୍ରେମିକାକୁ ଶୁଣାଏ ସପନର କବିତା
ଯେତେ ଯେତେ ଜାଣିଲେବି ଲାଗୁଛି ଜଣାଜଣା ଅଜଣା ।୨।

# ୬

ମନ୍ଦିର ନାହିଁ ଅଛି ଖାଲି ମୁଖଶାଳା
ସାଗର ଶୁଖିଛି ଝୁରେ ଖାଲି ତାରବେଳା ।୦।

ଗ୍ରନ୍ଥ ହଜିଛି ପଢ଼େ ଖାଲି ମୁଖବନ୍ଧ
ନର୍ତ୍ତକୀ ନାହିଁ ମନେପଡ଼େ କଟୀବନ୍ଧ
ଦେବଦାସୀ କାହିଁ ଶୂନ୍ୟ ଏ ନାଟଶାଳା ।୧।

ପ୍ରେମିକା ଯାଇଛି ମନେପଡ଼େ ପରିଚୟ
ନାଟକ ସରିଛି ସ୍ମୃତିଖାଲି ଅଭିନୟ
ଶିଳ୍ପୀ ମରିଛି ଝୁରେ ଖାଲି ରଂଗଶାଳା ।୨।

# ୭

ଆଖି ସେତ ନୁହେଁ ଝରଣା
ଖାଲି ଲୁହର ଅସରା ବରଷା
ମନ ସେତ ନୁହେଁ କାମନା
ଖାଲି ଜାଗେ କେତେ ଆଶା ନିରାଶା ।୦।

ସପନ ସେ ନୁହେଁ କଂପନ
ଯାହା ମନତଳେ ଦିଏ ପରଶ
ଫଗୁଣ ସେ ନୁହେଁ ଜୀବନ
ଯହିଁ ମଧୁର ମିଳନ ଆବେଶ
ମରୁ ସେତ ନୁହେଁ ବିରହ
ଖାଲି ବଢ଼ିବଢ଼ି ଚାଲେ ପିପାସା ।୧।

ସାଗର ସେ ନୁହେଁ ଚିକୁର
ଯଦି ନିଶି ସାଜେ ଅଭିସାରିକା
ଇନ୍ଦ୍ରଧନୁ ନୁହେଁ ଭୂରୁସେ
ଭରା କେତେ ଯେ ଅକୁହା କବିତା
ଅନାମିକା ସେ ଯେ ନାମ ତା
ଲେଖେ ଆଲୋକ ଲେଖଇ ତମସା ।୨।

ଦେବତା ଚରଣୁ ଆଶିଷ ସମ ମୁଁ
ଝରିଝରି ପଡ଼େ ନିତି
ଅନେକ ସଉଧ ଗଢ଼ି ମୁଁ ଶେଷରେ
ବୁକେ ମୋ ନେଇଛି ଲୁଟି ।୦।

କେତେ ପ୍ରଣୟିନୀ ପ୍ରଣୟୀ ମୋ କୋଳେ
ରଚିଲେ ବାସର ଶେଯ
କେତେ ବିରହିଣୀ ବିରହୀ ମୋ ବୁକେ
ରଖିଲେ ଅଲିଭା ଦାଗ
ଆଶା ନିରାଶାର ଆଲୁଅ ଅଂଧାର
ମୋ ପରେ ଯାଇଛି ବିତି ।୧।

ମରୁବୁକେ ମୋର ମରୀଚିକା ପ୍ରିୟା
ପାନ୍ଥେ କରେ ଦିଗ ହରା
ଜୋଛନା ପରଶେ ସପନର ଫୁଲ
ଫୁଟାଏ ସାଗର ବେଳା
ଧୂପଛାଇ ତଳେ ଘୁମାଇ କେବେ ମୁଁ
ଡହଳେ ଯାଇଛି ଉଠି ।୨।

# ୯

ସଜଳ ଶରତ ନିରୀହା କଳି ମୁଁ
ଛୁଅଁନା ଗୋ ମୋତେ ଛୁଅଁନା
ପ୍ରଭାତୀ ଗୋ ତୁମ ସାହାନାଇ ତୋଳି
କମ୍ପନ ମୋ ବୁକେ ଦିଅନା ।୦।

ଲାଜବତୀ ବଧୂ ପହିଲୁ ଉଷାରେ
ତୋଳିନିଅ ମୋତେ ତୁମ ଅଂଜଳିରେ
ଦେବତା ଚରଣେ ଫିଙ୍ଗି ଦିଅ ମୋତେ
କବରୀରେ ତୁମ ସାଜନା
ପ୍ରଣୟର ନିଶା ଜଗାନା ।୧।

ଆଖିର ଲୁହରେ ତନୁ ମୋ ଭିଜାଅ
ପାର ଯେତେ ବୁକୁ କୋହ ମୋତେ ଦିଅ
ବଧୁଲି ଅଧରେ ହସରସ ଭରି
ମନେ ମୋ ମମତା ଜଗାନା
ଝରିବାରେ ବାଧା ଦିଅନା ।୨।

# ୧୦

ମଧୁମତୀ ତୁମେ ବୟସ କନ୍ୟା ଯଉବନ ରାଜହଂସୀ
କେତେ ଯେ ବସନ୍ତ ଝରି ଝରିଯାଏ ତୁମରି ପରଶ ଆସି ।୦।

କାକକୃଷ୍ଣ ତୁମ ସଘନ ଚିକୁରେ ରଜନୀ ଲୋଡ଼ଇ ବାସ
ତୁମରି ଓଠର ପଦ୍ମ ମଧୁରେ କେତେ ଯେ ଭ୍ରମର ସ୍ୱର୍ଶ
ଶିଥିଳ ବସନ କଂପିତ ଅଂଚଳେ
ମଳୟ ଲୁଚଇ ଆସି ।୧।

ମଉନାବତୀ ଗୋ କଥା କୁହନାହିଁ ଆଖିରେ ଅସରା ଗୀତି
ଛନ୍ଦମୟୀ ଗୋ ଚରଣ ନଚାଳି ଅଜନ୍ତାର ଶିଳ୍‌ପ ରଚି
ଆକାଶ ନୀଳରେ ମିଶିଯାଅ ଦୂରେ
ସାଗର ଢେଉରେ ଭାସି ।୨।

# ୧୧

ଆକାଶର ନୀଳ ନେଇ ବାଦଲର ରଙ୍ଗନେଇ
ଆଲୋକର ରୂପଛବି ଆଂକିବି
ଜୋଛନାର ଫୁଲବନୁ ତାରା କଢ଼ି ତୋଳିନେଇ
ତୁମପାଇଁ ଗଭାରେ ମୁଁ ସାଜିବି ।୦।

ତୁମର ସେ ମନବନେ ମମତା କାକର ଝରେ
ଫୁଟିଲା ରଜନୀ ଗଂଧା
ତୁମ ଆଖି ଲୁହ ନେଇ କଜ୍ଜ୍ୱଳର କଳାନେଇ
ଝରିଲା ଅଳକା ନନ୍ଦା
ତୀର ସେ ଶୀତଳ ଛନ୍ଦେ ମରମ ବୀଣାର ଗୀତି
ନିତି ମୁଁ ଗୋ କାନ ପାତି ଶୁଣିବି ।୧।

ମଳୟର ଡେଣା ନେଇ କୋଇଲିର କୁହୁନେଇ
ଜୀବନର ପକ୍ଷୀ ଡେଣା ମେଲିବ
ହୃଦୟର ଆକାଶରେ ମନ ପକ୍ଷୀରାଜ ଚଢ଼ି
ଅଜଣା ରାଇଜେ ଯାଇ ଉଡ଼ିବ
ସପନ କୁଆଁରୀ କନ୍ୟା ଛୁଟାଏ ରୂପର ବନ୍ୟା
ତାର ସୁଏ ମୁଁ ଗୋ ନିତି ଭାସିବି ।୨।

# ୧୨

ଡାଆଣା ଶ୍ରାବଣ ଖାଲି ଚାହିଁଲା ମୋ ଗଭାକୁ
ସିଆଣା ଫଗୁଣ ଖାଲି ଚାହିଁଲା ମୋ ଶୋଭାକୁ ।୦।

ଲାଜଟିକେ କରିଲେ ମୁଁ ଲାଜେଇଲା ପଳାସ
ଆଖିଟିକେ ବୁଜିଲେ ମୁଁ କଇଁ ଭାଂଗେ ଅଳସ
ଝରଣା ବି ଗୋଡ଼େଇଲା ଦେଖି ମୋର ଚାଲିକୁ ।୧।

କଥାପଦେ କହିଲେ ମୁଁ କୋଇଲି ବି ରୁଷିଲା
ମୋ କର କଂକଣ ଦେଖି ମଳୟ ବି ଲୁଚିଲା
ଚନ୍ଦ୍ରର ଚକୋର ଦେଖେ ମୋ ଅଧର ତିଳକୁ ।୨।

# ୧୩

ଜୋଛନା ରାତିର ହଂସ ମିଥୁନଗୋ ପ୍ରଣୟ ଚିଟାଉ ନେଇ
ଉଡ଼ିଯାଅ ଦୂରେ ନୀଳିମା ଭିତରେ ମିଳନର ଗୀତିଗାଇ ।୦।

ତୁମ ଅଭିସାର ଚନ୍ଦନ ନେଇ ଲାଜବତୀ ନିଶିଗଂଧା
ତୁମରି ପ୍ରଣୟ ସୁରଭି ବାସରେ ହୋଇଚି ଯୋଜନଗନ୍ଧା
ତୁମରି ଆଖିର ନୀଳିମା ଛାଇରେ ଆଖି ମେଲେ ନୀଳକଇଁ ।୧।

କାନ୍ତ କାନ୍ତାଗୋ ଶାନ୍ତଶୀତଳ ଡେଣା ଯଦି ଯାଏ ଥକି
ଶିକର ଭିଜାସେ ଶ୍ୟାମଳୀ ଶେଯରେ ଧୀରେ ଯିବ ତୁମେ ଲୋଟି
ତୁମ ଆଲିଙ୍ଗନେ ଶତ ବସନ୍ତର ମଳୟ ଆସିବ ବହି ।୨।

# ୧୪

ପ୍ରୀତି ନୀଳପଦ୍ମଟିଏ ପ୍ରିୟା ଆଉ ପ୍ରଣୟୀ ମନରେ
ସ୍ୱପ୍ନ ନୀଳ ସ୍ମୃତି ଝିଏ ନିଦଭରା ଲାଜୁଆ ଆଖିରେ ।୦।

ପ୍ରେମ କେବେ ଓଠେହସ ପୁଣି କେବେ ଆଖିଲୁହ ଧାରା
କାହ୍ନାର ବଂଇଶୀ ସୁର ପୁଣି ଆହା ରାଧାର ନୂପୁର
ପୁଣି ସେ କଦମ୍ବ ହୋଇ ଭାସିଯାଏ ଯମୁନା ନଈରେ ।୧।

ପ୍ରେମ ନାଲି କୃଷ୍ଣଚୂଡ଼ା ପୁଣି କେବେ କଜଳ ଭଅଁର
କାହ୍ନାର ଚାହାଁଣି ଆହା ବେପଥୁ ସେ ଅଳସୀ ରାଈର
ପୁଣି ସେ କଙ୍କଣହୋଇ ବାଜିଉଠେ ତମାଳ କୁଞ୍ଜରେ ।୨।

# ୧୫

ଏ ଆଖି ଲୁହର କାବ୍ୟେ   ହେ ନାୟକ ଶ୍ରାବଣ
ଜଳାଇ ବିରହେ ମୋତେ   ଦହିଲ ଏ ପରାଣ ।୦।

ଏଘନ ତାମସୀ ରାତେ ଝର ଝର ବରଷା
ସେ ଆଜି ସୁଦୂରେ ହାଏ ଦେଲେନାହିଁ ଭରସା
ପୀରତି ପୁଲକ ନାହିଁ ପାଏ ଖାଲି ଦହନ ।୧।

କଦମ୍ବ ସୁରଭି ଖେଳେ ଉଚ୍ଛୁଳା ଏ ଯମୁନା
ସେ କାହିଁ ରହିଲେ ଦୂରେ ବଂଶୀ ଆଉ ବାଜେନା
ମନ ଖାଲି ଖାଲି ଲାଗେ ବିଫଳ ଏ ଲଗନ ।୨।

# ୧୬

ପ୍ରେମ ଯଦି ଏକ ମନ୍ଦିର
ମୁଖଶାଳା ତାର ପ୍ରଥମ ପରିଚୟ
ପ୍ରେମ ଯଦି ରଂଗମଞ୍ଚ
ମନ ତଳେ ତାର ପ୍ରଥମ ଅଭିନୟ ।୦।

ମୁଖବନ୍ଧ ବିନା ଗ୍ରନ୍ଥର ମାନେ କିଛିଥାଏନା
ଅଭିଲମ୍ବ ବିନା ଜ୍ୟାମିତିକ ସତ୍ୟ ରଖି ହୁଏନା
ପ୍ରେମର ବି ନାହିଁ ମାନେ
ଯଦି ନାହିଁ ତହିଁ ହୃଦୟ ବିନିମୟ ।୧।

ଶ୍ୱେତ ପଦ୍ମ ବିନା ପଦ୍ମ ମଧୁର ମାନେ ରହେନା
ନିଶିଗନ୍ଧା ବିନା ଚନ୍ଦ୍ର ସୁରାର ମାନେ ଥାଏନା
ପ୍ରେମରବି ନାହିଁ ମାନେ
ଯଦି ନାହିଁ ଜଳେ ବିରହେ ଅହରହ ।୨।

# ୧୭

ମୁଁ କେବେ ଛାଇଯାଏ କା'ର ମନେ ସପନ
ଜୋଛନାର ଭସାଣିଆ ରୂପେ କରେ ମଗନ ।୦।

କେବେ ମୁଁ ଗୋ ସାଜିଯାଏ ସାତରଂଗି ଇନ୍ଦ୍ରଧନୁ
ଫଗୁଣର ରୂପ ନେଇ ମାଖିଯାଏ ଫୁଲରେଣୁ
ଭରିଦିଏ ମନ ବନେ ଅଳି ମଧୁ ଗୁଂଜରଣ ।୧।

ମୋ ମନର ଯାଯାବର ମରୁ ନଈ ଧାରେ ଧାରେ
ଦ୍ରାକ୍ଷାଲତା ଅନ୍ତରାଳେ ଖଜୁରି ବଣର ପାରେ
ଖୋଜିଯାଏ ସିରାଜୀରେ ସଜାଇତା ଲପନ ।୨।

ଏଇ ମୋର ବୁକେ ଚନ୍ଦ୍ର କେତେ ସ୍ୱପ୍ନ ପୁଲକ ଦିଏ ବୁଣି
ଏଇ ମୋର କୋଳେ ସୂର୍ଯ୍ୟ କେତେ ରଂଗ ପରାଗ ବୋଳେ ଆଣି ।୦।

କେତେ ଇନ୍ଦ୍ରଧନୁ ଯାଏ ଫୁଟି
ଭୀରୁ ଉଲ୍‌କା ଯାଏ କେତେ ଲୋଟି
କେତେ ଛାୟା ପଥ ମାୟା ନିହାରୀକା
କୋଟି ତାରା ତାର ଛନ୍ଦ ଚପଳତା
ବକ୍ଷେ କଂପନ ଦିଏ ଆଣି ।୧।

ମୋର ନୀଳିମାର ନୀଳ ପକ୍ଷୀ
ଉଡ଼େ ମଳୟର ଡେଣା ପିଟି
ଜ୍ୟୋସ୍ନା ଜୁଆରରେ ଅନ୍ଧ କୁହେଳିରେ
ରୂପ ଫଗୁଣରେ ମଧୁ ଲଗନରେ
ସୁଧା ସୁଷମା ଦିଏ ବୁଣି ।୨।

# ୧୯

| | | |
|---|---|---|
| ମନେପଡ଼େ | କଇଁଫୁଲ | ପ୍ରଥମ ସକାଳ |
| ମନେପଡ଼େ | ହସଢ଼ଳା | ମିଠା ଖରାବେଳ ।୦। |

| | | |
|---|---|---|
| ମନେପଡ଼େ | ପ୍ରଜାପତି | ଦେହର ବଗିଚା |
| ମନେପଡ଼େ | ହୀରାମୋତି | ରୂପର ଗାଲିଚା |
| ମନେପଡ଼େ | ଭାବଦିଆ | ଆମ୍ବର ବଉଳ |
| ମନେପଡ଼େ | ଚୋରିଚୋରି | ପ୍ରୀତି ନଈକୂଳ ।୧। |

| | | |
|---|---|---|
| ମନେପଡ଼େ | ଆଖିତଳ | ଲାଜର ପାଚେରି |
| ମନେପଡ଼େ | ଛାତିତଳ | ସାଗର ଲହରୀ |
| ମନେପଡ଼େ | କବରୀର | ପାତଳ ଅଂଧାର |
| ମନେପଡ଼େ | ଗୋଡ଼ଖସା | ରାତିର ସହର ।୨। |

| | | |
|---|---|---|
| ମନେପଡ଼େ | ଆଉଖାଲି | ମନେପଡ଼େ ମୋର |
| ଶେଷନାହିଁ | ସଖିଏଇ | ମନେପଡ଼ିବାର ।୩। |

# ୨୦

ମୁଁ .....
ଜରିଦିଆ ମନତଳେ ମୀନାକରା ପୀରତି
ଲାଜ ଘେରା ଫୁଲ କୁଂଜେ ନଟୀଟିଏ ସାଜିଚି ।୦।

ଆଖିରେ ମୋ ନୀଳ ନୀଳ ଇନ୍ଦ୍ରନୀଳ ସପନ
ଓଠରେ ମୋ ଢଳଢ଼ଳ ମହୁଢ଼ଳା ଫଗୁଣ
ଶ୍ରାବଣୀ ଗଭାରେ ମୋର ମହକାଏ କେତକୀ
ପ୍ରଣୟ ଜୋଛନା ରାତେ ମୁଁ ଚନ୍ଦ୍ର ଚାତକୀ ।୧।

ଆଙ୍ଗୁଳିରେ ଚମ୍ପାଫୁଟେ ସୁରେ ଝରେ ମଦିରା
ଲହୁଣୀ ଦେହରେ ମୋର ସୁଷମାର ପସରା
ବଙ୍କା ବଙ୍କା ଭୁରୁ ତଳେ ଇନ୍ଦ୍ରଧନୁ ସାଜିଚି
ଯଉବନ ପଦ୍ମବନେ ମୁଁ ସୂର୍ଯ୍ୟ କପୋତୀ ।୨।

# ୨୧

ସ୍ନେହର ଫଗୁଣ ତୁମେ ଅଲିଅଳି ଲଗନେ
କୁମାରୀ ମନ ମୋ ଭରେ ଝିଲିମିଲି ସପନେ ।୦।

ଡାଳେ ଡାଳେ ଉଡ଼ି ଉଡ଼ି ତୁମ ସେଇ କୋଇଲି
କଥାରେ କଥାରେ କରେ ମୋତେ କେତେ ଟାହୁଲି
ତୁମରି ମଳୟ ଆସି ଲୁଚି ଲୁଚି ମୋ କାନେ
ମନଚୋରି ମନ୍ତ୍ର ଆହା କହିଯାଏ ଗୋପନେ ।୧।

କୃଷ୍ଣଚୂଡ଼ା ତୁମ ବିଂଚେ ମୁଠା ମୁଠା ଅବିର
ତୁମ ରଂଗ ଭରି ଦିଏ ମଦିର ମୋ ଅଧର
ଭଂଜ ନାୟୀକାର ସମ ଦେଖି ମୋତେ ବିଜନେ
ଚନ୍ଦ୍ର ଭାନୁ ମନ ନେଇ ବୁଲ କୁଂଜ କାନନେ ।୨।

## ୨୨

ମୁଁ ଗୋ ଛୋଟ ରାଣଟିଏ ନାହି ନାହିଁ ଲଗନେ
ମୁଁ ଗୋ ଛୋଟ ସ୍ୱପ୍ନଟିଏ ନିଦ ନିଦ ନୟନେ ।୦।

ଛୋଟ ହସ ଢେଉଟିଏ କୁଲୁ କୁଲୁ ଓଠରେ
ଟିକି ଫୁଲ କଢ଼ିଟିଏ କେତକୀର ଗଭାରେ
ମୁଁ ଗୋ ଛୋଟ କୁହୁଟିଏ ମିଠା ମିଠା ଫଗୁଣେ ।୧।

ମୁଁ ଦରଦୀ ସୁରଟିଏ ଉଦାସିଆ ସଂଜରେ
ମୁଁ ପୁରବୀ ଛନ୍ଦଟିଏ କାମିନୀର କୁଂଜରେ
ମୁଁ ବିରହ ଲୁହଟୋପେ ଝରଝର ଶ୍ରାବଣେ ।୨।

# ୨୩

ସମୟର ସୂଚିପତ୍ର ଓଲଟାଇ ପଛକୁ ପଛକୁ
ମୁଁ ଖୋଜୁଛି ଆଜି ଖାଲି ଚିହ୍ନା ଚିହ୍ନା ତୁମରି ମୁହଁକୁ ।୦।

ଝରାପତ୍ର ସବୁ ହୁଏ ତୁମ ଦିଆ ହାତ ଲେଖା ଚିଠି
ବଇଶାଖ ଖରା ମାପେ ତୁମ ଛାତି ବିରହର ତାତି
ଆଷାଢ଼ ମେଘରେ ଦେଖେ ଲୁହଭରା ତୁମରି ଆଖିକୁ ।୧।

ତୁମ ଓଠ ପାଖୁଡ଼ାରେ ଫଗୁଣର ଝରା କୃଷ୍ଣଚୂଡ଼ା
ଝଲସେ ହଜିଲା ରୂପ ଦେଖି ପୁଷ କଅଁଳିଆ ଖରା
ତୁମ ସ୍ମୃତି ଉଠେ ନାଚି ଦେଖି ଏଇ କପୋତୀ ଡେଣାକୁ ।୨।

# ୨୪

ମୋ ଝରକା ସେ ପାଖରେ ଚଇତ ନୂପୁର
କିଶୋରୀ ତୋ ସୁନା ଚୁଡ଼ି ତୋଳେ ମନେ ଝଡ଼ ।୦।

ମୋ କାବ୍ୟର ନାୟକ ମୁଁ ନାମ ଚନ୍ଦ୍ରଭାନୁ
ଆଖିରେ ଯୋଖି ମୁଁ ଆମ୍ବ ବଉଳର ଧନୁ
ଲାବଣ୍ୟବତୀର ବୁକେ ମାରେ ଫୁଲଶର ।୧।

ଧୂପ-ନାୟୀକା ଛାତିରେ ଦେଖି କୋଣାରକ
ମୋ ମନରେ ପଦ୍ମ ଫୁଲ ପାଖୁଡ଼ାର ଭୋକ
ମୋ ନାୟିକା ଓଠେ ପଢ଼େ ମୁଁ ରସକଲ୍ଲୋଳ ।୨।

# ୨୫

ମନଟାକୁ ବାନ୍ଧିଥିଲି ପଣତ କାନିରେ
କେତେ ବେଳେ ହଜିଗଲା ଖିଆଲି ନଈରେ ।୦।

ମନ ମୋର ଛୋଟ ଏକ ବାଲିଘର ତୋଳି
ବେଳେ ବେଳେ ମିଛେ ମିଛେ ଯାଏ ଧୂଳି ଖେଳି
କେବେ ସାଉଟେ ଶାମୁକା ଦରିଆ କୂଳରେ ।୧।

ମନମୋର ପିଲା ହୋଇ ଧରେ ପ୍ରଜାପତି
କେବେ ଫୁଲ ପାଖୁଡ଼ାରେ ବସେ ଚିଠି ଲେଖି
କେବେ ପୁଣି ବନ୍ଦୀ ଚିନ୍ତା ଅଡୁଆ ସୂତାରେ ।୨।

# ୨୬

ଆଜି ଏକ ସୂତ୍ରଧର ଗତ ଆଉ ଆଗାମୀ କାଲିର
ଜୀବନ ଯେ ସେତୁବନ୍ଧ ଜନମ ଓ ମରଣ ନଦୀର ।୦।

ଫୁଲ ଏକ ଯୋଗସୂତ୍ର ଫୁଟିବା ଓ ଝଡ଼ିବା ଭିତରେ
ମନ ଏକ ଯୋଗସୂତ୍ର ଭାଂଗିବା ଓ ଯୋଡ଼ିବା ରୀତିରେ
ପ୍ରଣୟ ଯେ ଫୁଲରାଖି ପ୍ରିୟା ଆଉ ପ୍ରଣୟୀ ବାହୁର ।୧।

ଅଭିମାନ ଉଙ୍କି ମାରେ ଲୁହଆଉ ହସର ମଝିରେ
ପ୍ରୀତି ଇତିହାସ ଲେଖେ ମିଳନ ଓ ବିରହ ତୁଳିରେ
ଆଖି ପୁଣି ନୀଳ ସ୍ମୃତି ନିଦ ଆଉ ସପନ ରାତିର ।୨।

# ୨୭

ମୁଁ ଯେ ଆଲୋକର ଏକ ଝଡ଼;
ସୋହାଗ ଚନ୍ଦ୍ରିକା ମଧୁମଖା ମୁଁ ଯେ,
ସ୍ୱପ୍ନ ପୀୟୁଷ ଝର ।୦।

ବୁଦ୍ଧଂ ଶରଣଂ ଭାଷାରେ ଭାଷାରେ ମୁଁ ଏକ ଅମର ବେଣୁ
ଯମୁନା କୂଳର ତମାଳ ନୀଳରେ ମର୍ମର ରୁଣୁଝୁଣୁ
ସରଳ ଶିଶୁର ଚପଳ ଅଧରୁ କୁଳୁକୁଳୁ ହସଧାର ।୧।

ପହିଲୁ ଉଷାର ଆବାହନୀସୁରେ ମୁଁ ଗାଏ ମଙ୍ଗଳଗୀତି
ମଧୁ ବାସରର ବଧୂ ଆଗମନେ ମୁଁତ ସେଇ ଶୁଭତିଥି
ବନ୍ଦୀଶାଳାର ଅଷ୍ଟମ ଗର୍ଭର ମୁଁ ଯେ କୁଆଁ କୁଆଁ ସୁର ।୨।

# ୨୮

ନିଶିଥିନୀ ଅଭିସାର ସାରିଗଲେ ଫେରି
ରାତି କବାରୀରୁ ଗଲେ ତରାଫୁଲ ଝଡ଼ି
ଆସେ ମୋ ମିଳନ ଲଗନ
ମୁଁ ଯେ ପ୍ରଣୟରେ ହୁଏ ମଗନ ।୦।

ଚକ୍ରବାଳୁ ଡାକନ୍ତି ମୋ ପ୍ରିୟ ହାତଠାରି
ଦରମରେ ଲାଜଆଖି ଦିଏ ମୋର ଖୋଲି
ଅଧରୁ ମୋ ହସରସ ଝରେ ଖିଲି ଖିଲି
ସରମେ ସରେ ମୋ ମରମ
ମୁଁ ଯେ ପୀରତିରେ ହୁଏ ମଗନ ।୧।

ପ୍ରତୀଚୀ କୋଳରେ ହଜିଗଲେ ପ୍ରିୟ ଛବି
ମୋ ତନୁ ଶିଶିରେ ଧରି ତାଂକ ପ୍ରତିଛବି
ସାରା ରାତି ଉଜାଗରେ ତାଂକୁ ଅନୁଭବ
ବିରହେ ଜଳେ ମୋ ପରାଣ
ମୋର ସରମେ ମରେ ମୋ ମରମ ।୨।

# ୨୯

ଶ୍ରାବଣ ସହରେ ଆଜି ଭିଡ଼ ଜମେ ଅନେକ ମେଘର
ତରାର ଜଲ୍‌ସା ଘରେ ଝିକିମିକି ନାଚ ବିଜୁଳିର ।୦।

ହାତେ ପିନ୍ଧି ଯୋଡ଼ି ଯୋଡ଼ି ଶଙ୍ଖମଲି ବଳାକାର ଚୁଡ଼ି
ବରଷାର ରିମ୍ ଝିମ୍ ତାନେ ତାଳେ ସୁର ଧରି ଧରି
ଶ୍ରାବଣୀ ବାସର ରଚେ ଗଢ଼ି ତାର କଇଁଫୁଲ ଘର ।୧।

କଦମ୍ବର ଚିଠି ନେଇ ଧାଇଁଯାଏ ଉଜାଣି ଯମୁନା
ତମାଳ କୁଞ୍ଜରେ ପଢ଼ି ରାଇମନ ହୁଏ ଆନମନା
ଗୋପିନୀ ଆକାଶେ ଘେରେ କାହ୍ନା ମେଘ ପ୍ରୀତି କଳଙ୍କର ।୨।

# ୩୦

ମାନସୀଗୋ ତୁମ କବରୀ ସାଜରେ
ଅନେକ ମୋ ପ୍ରୀତି କବର
ପ୍ରେୟସୀ ଗୋ ତୁମ ଫୁଲ ଗଜରାରେ
ଅନେକ ମୋ ସ୍ମୃତି ଅଧୀର ।୦।

ତୁମ ବୟସର ସବୁଜ ବନରେ ବିଦଗ୍ଧ ମୋ ମନ ହରିଣ
ସୂର୍ଯ୍ୟହସା ତୁମ ସୁନେଲି ଓଠରେ ଅନେକ ମୋ ଆଶା ଦହନ
ତୁମ କାମନାର ନଦୀ ଧାରେ ଧାରେ
ମୁଁ ପିଇଲି ଖାଲି ଜହର ।୧।

ତୁମ ଆଖି ନୀଳ ନୀଳିମା ଛାଇରେ ମରିଯାଏ ମୋର କାକଳି
ତୁମ କୃଷ୍ଣଚୂଡ଼ା ହସ ପାଖୁଡ଼ାରେ ଝରେ ମୋ ଲୁହର ଶେଫାଳି
ତୁମ ଆଗାମୀର ଆଲୋକ ନିଶାରେ
ଲୁଚେ ମୋ ଅତୀତ ଅନ୍ଧାର ।୨।

# ୩୧

ସୁଦୂରର ଏଇ ତୁଷାର ଗୁହାରେ
ବନ୍ଦୀ ମୁଁ ଏକ ଯାଯାବର
ମୋ ଚାରି ପାଖରେ ହିମର ପ୍ରାଚୀର
ଗଢ଼ିଛି ଶୀତଳ କାରାଗାର ।୦।

ବରଫ ଝଡ଼ର ସୁ-ସୁ-ସୁରେ ମୋ କାତର କଣ୍ଠ ହଜେ
କେତେ ସିଲ୍‌କଣ୍ଠା-ବେଦନା ଭିତରେ ମୋ ଅନ୍ତରତଳ ଭିଜେ
ବିନ୍ଦୁଏ ଆଲୋକ ପାଇଁ ମୋ ଝୁରୁଛି
ଅନ୍ଧାରୀ ଏ ଛୋଟ ବୁକୁତଳ ।୧।

ସେ କେଉଁ ଏସ୍କିମୋ ସରଳା ବାଳିକା ମୁକ୍ତି ମଶାଲ ଧରି
ମୋ ବରଫି ମନେ ବଂଚି ରହିବାର ଉତ୍ତାପ ଦେଲା ଭରି
ସୁମେରୁ ଠାରୁ ମୁଁ କୁମେରୁ ଯାଏ
ଦେଖେ ସଂଜୀବନୀ ପାରାବାର ।୨।

# ୩୨

ରାଧା ଚାଲିଚିତ ମଠେଇ ମଠେଇ
ଭାରି କଳସୀକୁ କାଖେଇ
କହ୍ନେଇ ଚାଲିଚି ଢୋଳେଇ ଢୋଳେଇ
ବଂଇଶୀ ବଜେଇ ବଜେଇ ।୦।

ପବନ ବହୁଛି ସୁଲେଇ ସୁଲେଇ
କଦମ୍ବର ଡାଳ ହଲେଇ
ଯମୁନା ଶୋଇଛି ଘାଲେଇ ଘାଲେଇ
ଉଜାଣି ସୁଅରେ ଧିମେଇ
ଜାଂଗୁଲୁ ଜାଂଗୁଲୁ ଅଂଧାର ଆସଇ
କଳାମେଘି ଶାଢ଼ୀ ବେଢ଼େଇ ।୧।

କଳା କହ୍ନେଇ ସେ କଣେଇ ଅନେଇଁ
ଛାତିରେ ଅଗିନି ଜଳେଇ
କିମ୍ହୁ ପିଆଇ ରସେଇ ରସେଇ
ମନ ନେଇଗଲା ମନେଇ
ଅଖା ଧୋଉଚି ମୁଁ ଖେଳେଇ ଖେଳେଇ
ଗୁଣତ ଗାଉଚି ଶୁଣେଇ ।୨।

# ୩୩

ପାକଲା ଗାମୁଛା କାନ୍ଧରେ ପକାଇ

ଗୋଡ଼ କାଢ଼ିଲି ମୁଁ ହାଟକୁ

ପଛରୁ ଥାଇକି ବିଲେଇ ଛିଂକିଲା

ଅନୁକୂଳ ଗଲା ଚୁଲିକୁ ।୦।

ସଜମାଛରେ ତ ପୋକ ପଡ଼ିଗଲା କୁଣିଆ ହୋଇଲେ ବିମୁଖ
ନୂଆ ଲୁଗା ବୋଲି ଯାହାକୁ ଆଣିଲି ଓସାର ପଡ଼ିଲା ନିଅଣ୍ଟ
ଅରୁଆ ଚାଉଳ ଛତି ମାରିଗଲା

ସବୁ ଅଘଟଣ ଯୋଗକୁ ।୧।

ବାଡ଼ି ବାଇଗଣ କଳା ମଚ ମଚ ଆଖି ଯାଉଥିଲା ଝଲସି
ବାଦ ସାଥି ଆମ ପଡ଼ିଶା ବଳଦ ଡାଳ ମୂଳ ଦେଲା ଆଉଁସି
କରମରେ ଅଛି ହଟ ହଟା ଯୋଗ

ଦୋଷ ଦେବି କିଆଁ କାହାକୁ ।୨।

# ୩୪

ସଂଗାତ ଖୋଜି ଦେରେ...ମୋ ପାଇଁ ତୁ ଶଶୁର ଘର
ହଉ ପଛେ ବହୁ ଦୂର...ସଂଗାତ...
ମୋର କନିଆଁ ହୋଇଥିବ ସୁନ୍ଦର ।୦।

ବାଡ଼ି ଗଡ଼ିଆରେ ତାଙ୍କ ଥିବ ରୋହୀ ଭାକୁର
ବଗିଚାରେ କାନ୍ଦି କାନ୍ଦି ଫଳୁଥିବ କଦୀଳ
ଗୁହାଳରେ କାଳୀଗାଈ ପୁଣି ଥିବ ଦୁହାଁଳ
ଖାଇବାକୁ ମିଳିବରେ ଖାଣ୍ଟି ସଜ ଓଖର
(ସଂଗାତ) ମୋର କନିଆଁ ରାନ୍ଧୁଥିବ ମଧୁର ।୧।

ପୁନେଇଁ ଖିଆରେ ଥିବ ଶଳାଶାଳୀ ଆଦର
ଶଳା ଭାଉଜ ମୋ ଜାଣିଥିବ ବନ୍ଧୁ ବେଭାର
ନଣନ୍ଦେଇ ମନବୁଝି ନଣନ୍ଦକୁ ସଅଳ
ପଠେଇବ ଖୋସାରେ ତା ଖୋସି ଝରା ବଉଳ
(ସଂଗାତ) ମୋର କନିଆଁ ମନଥିବ ଚଂଚଳ ।୨।

# ୩୫

ତୋ ଘରକୁ ଯିବା ବାଟ ଏତେ ଅଂକା ବଂକା ଲୋ
ଯାଉ ଯାଉ ହେଲି ବାଟବଣା
ତୋ ଆଖିର କଥା ସଖି ଅଡୁଆ ମଡୁଆ ଲୋ
ଅବୁଝା ସେ ପୂରା ଷୋଳଅଣା ।୦।

ତୋ ଗାଆଁ ତୋଟାରେ ଫଳେ   ଜାତି ଜାତି ଫଳଲୋ
ନାଆଁ ତାର ଅମୁକ ସମୁକ
ତୋ ଗାଆଁ ନଈରେ କାଳେ   ଜାତି ଜାତି ମାଛଲୋ
ଦେଖିବାକୁ ଫରକ ଫରକ
ତୋ ବାଡ଼ିରେ ଯେତେଫୁଲ   ସେତେ ତାର ରଂଗ ଲୋ
ବାସ ତାର ଜାଣିବି ହୁଏନା ।୧।

ତମ ଗାଆଁ କନିଆଁଙ୍କର   ଡଉଲ ଡାଉଲ ମୁହଁ
କଥା ତାଙ୍କ ଟକଲ ମକଲ
ଦୋଳ ମୁକୁଟ ପିନ୍ଧାଇ   ବେଦୀ ମୁଣ୍ଡରୁ ଓହ୍ଲାଇ
ବର ସବୁ ହେଲେ ଶିଶୁପାଳ
ଆମ ଗାଆଁ ଦିନ ଯାଇ   ସଂଜତ ଘନେଇ ଆସେ
ତମ ଗାଁ ରାତିତ ପାହେନା ।୨।

## ୩୬

ପରଶମଣି ମୋ ପରଶ ମଣି
ଲୁହାକୁ ଛୁଇଁତୁ ସୁବର୍ଣ୍ଣ କରିଲୁ
ମୋତେ ଯାହା କଲୁ ବାଉଁଶ କଣି ।୦।

ପାଣିକୁ ଛୁଇଁତୁ ଗଂଗାଜଳ କଲୁ
ପଙ୍କରେ ଫୁଟାଇ ଫୁଲ
ଖାରକୁ ଛୁଇଁତୁ କ୍ଷୀର କରିଦେଲୁ
ଶାମୁକାରେ ମୋତି ମୂଲ
ମୋତେ ଛୁଇଁ ଭୂଆଁ ବୁଲେଇ ବୁଲେଇ
ହେଲୁତୁ ପିତେଇଶୁଣି ।୧।

କେଂପାକୁ ଛୁଇଁତୁ କନ୍ଦରପ କଲୁ
ଯୋଗୀକୁ କଲୁତୁ ଭୋଗୀ
ଛୋଟିକୁ କରିଲୁ ପାଟ ନାହାକାଣୀ
ପିତଳକୁ ସୁନାମୁଦି
ଭେଣ୍ଡାଥିଲି ମୋତେ ମେଣ୍ଢା କରିଦେଲୁ
ସାଜି ତୁଲୋ ମାଲିଆଣୀ ।୨।

# ୩୭

ଚିକିଟା ମାଟିରେ କଣ୍ଢେଇ ଗଢ଼ିଲି କଳିଚୂନେ ରଂଗେଇଲି
ପସରା ସଜାଡ଼ି ବାଟେ ଯାଉ ଯାଉ କଚାଡ଼ି ହୋଇ ପଡ଼ିଲି
ହାଏରେ...ମୁଣ୍ଡ ମୋ ଗଲା ବିଗିଡ଼ି ।୦।

ଘରଣୀ କହିଲା ହସହସ ହୋଇ ସଅଳ ଫେରିବା ଦେଖି
"କାହା ମୁହଁଆଗେ ଚାହିଁଥିଲ ଆଜି ପହିଲି ସକାଳୁ ଉଠି
ଘଡ଼ିକ ଭିତରେ ସବୁ ବିକିଦେଲ
ପସରା ପଡ଼ିଚି ଖାଲି ।" ।୧।

ମୁଁ କିଛି ନକହୁଁ ପୁଣିସେ କହିଲା ଗେହ୍ଲେଇ ହୋଇ ମୋ ପାଶେ
ରଜକମେଇଁପା ରହିଲା ମୋଟରୁ ଜମା ଆଉ ଦୁଇ ମାସେ
କଉଦିନ ଆଣିଦେବ ମୋତେ
ଖଣ୍ଡେ ଫୁଲପକା ଶାଢ଼ୀ ।୨।

# ୩୮

ପଣ କରିଛୁ ମୋତେ ଚାହାଁନା
ତୋର ଆଖି ହେଲା ଅମାନିଆଁ ଲୋ
ଟାଣ କରିଛୁ ଗୋଡ଼ କାଢ଼ନା
ତୋର ମନ ହେଲା ଦଗାଦିଆ ଲୋ ।୦।

ପଂଚବଟୀରେ ଲଇଖଣିଆ
ତିନିଗାର କାଟି ଗଲା ବଣକୁ
ସୁନା ହରିଣୀ ଲୋଭ କରିଲୁ
ମାୟା ଶବଦରେ ଗଲୁ ଭୁଲିତୁ
ଯତି କଥାରେ ମତି ହାରିଲୁ
ଗାର ଡ଼ିଆଁ ଭାବ ଏବେ ପାଆଲୋ ।୧।

କୁଂଜବନରେ କଳା କହ୍ନେଇ
ତାର ବଂଇଶୀରେ ଗୀତ ଗାଇଲା
ସେଥିପାଇଁକି ତୋର ଛାତିରେ
ପ୍ରୀତି ନିଆଁ ଦାଉ ଦାଉ ଜଳିଲା
କୁଳ ବହୂତୁ ରାତି ଅଧରେ
ଘର ଛାଡ଼ିବାର ଭାବ ପାଆଲୋ ।୨।

# ୩୯

ତୋ ଭାଇ ମୋ ଭାଇ ସଂଗାତ ବସିଲେ
ପଣା ସଂକରାନ୍ତି ଦିନ
ଜଣେ ଆଣିଦେଲା ଜାଇ ଫଳ ଗୁଆ
ଆଉ ଜଣେ ଛାଚିପାନ ।୦।

ତୋ ଭାଇ ମୁଣ୍ଡରେ ଶେତଚନ୍ଦନ ମୋ ଭାଇ ମୁଣ୍ଡରେ ନୋଳ
ତୋ ଭାଇ ଦୁଆରେ ମହୁରୀ ବାଜେଲୋ ମୋ ଭାଇ ଦୁଆରେ ଢୋଲ
ତୁ ଧରିଥିଲୁ କାଣ୍ଡ କଳସୀ
ମୋ ହାତରେ ଖିଲି ପାନ ।୧।

ତୋ ଭାଉଜ ମୁହଁ ପାନ ପତରଲୋ ମୋ ଭାଉଜ ମୁହଁ ଚାନ୍ଦ
ମୋ ଭାଇର ଝିଅ ଯଶୋଦା ହେବାକୁ ତୋ ଭାଇର ପୁଅ ନନ୍ଦ
ତୋ ଭାଇର ଗାଆଁ ଗୋପପୁର ହେଲେ
ମୋ ଭାଇର ମଧୁବନ ।୨।

# ୪୦

କେତେଦିନ ଆଉ ରହିବ ନଣନ୍ଦ ହୋଇ ତୁମେ ଅଭିଆଡ଼ୀ
ପାଠ ପଢୁପଢୁ ବାହା ବଅସର ଦିନ ଯେ ଯାଉଚି ଗଡ଼ି ।୦।

ରଂଗ ବେରଂଗର କୁଂକୁମ ଲୋଭରେ ସିନ୍ଦୁର ଟୋପାକୁ ଭୁଲି
ସୁନା ଶଂଖା ଚୁଡ଼ି ସପନ ହେଲାଣି ହାତ ଦୁଇଟା ଯେ ଖାଲି
ନିହାତି କହିଲେ ଫେସନ ଦେଖେଇ ପିନ୍ଧିଦିଅ ପଟେ ଘଡ଼ି
କିଶାଢ଼ୀ ପିନ୍ଧୁଛ ଦିହସାରା ଦିଶେ ନାହିଁ ପୁଣି ଧାରେ ଧଡ଼ି ।୧।

ମୁହଁଟାରେ ତୁଛା ଟାଣ କର ସିନା ଛାତିଟା ଯାଉଚି ଥରି
ଜାଣିଲି ଜାଣିଲି ଆଗରୁ କା' ପାଖେ ମନଟା ଦେଇଛ ହାରି
ସେଇଥି ପାଇଁକି ଯେତେ ବରଦେଖ ମୁହଁକୁ ଦେଉଚ ମୋଡ଼ି
କେତେ ଦିନ ଆଉ ବସିବ ତୁମେ ଗୋ ଦୁଆର ବନ୍ଧକୁ ମାଡ଼ି ।୨।

# ୪୧

ତୋ ଲାଗି ଏ ମନଟାକୁ କରିଦେଇ ବୀମା ।
କିମିତି ଯିମିଲୋ ଗୋରୀ ଲଢ଼ିବାକୁ ସୀମା ।୦।

ବଂଧୁକରୁ ଯେବେ ମୁଁଲୋ ଫୁଟାଇବି ଗୁଳି
ମୋ ଆଗରେ ଖେଳୁଥିବ ଧୂଆଁର କୁଣ୍ଡଳି
ଚାରିଆଡ଼େ ବରଫ ଯେ ହେଉଥିବ ଜମା
ତୋ ବରଫି ମୁହଁ ଆହା ପାସୋର ହୁଏନା ।୧।

ଅନ୍ଧାରରେ ଚାଲୁଥିବି ଅଣ୍ଡାଳି ଅଣ୍ଡାଳି
କେତେବେଳେ ଶୋଇ ଶୋଇ କେବେ ବା ଘୁସୁରି
ଛାଉଣିରେ ବିଗୁଲତ ବଜାଇଲେ ସେନା
ତୋ ସଂଜବତୀର ଶଂଖ ପାସୋର ହୁଏନା ।୨।

# ୪୨

ଚାକିରୀ ନପାଇ ରହିଲି ମୁଁ ହୋଇ ବେକାରୀ
କରିଦେଲୋ ମତେ ସରାଗେ ତୋ ମନ ବେପାରି ।୦।

ଥେଟର ପାର୍ଟିରେ ରହନ୍ତି ନାହିଁ ମୋ ଚେହେରା
ବିଗୁଲ ବଜାନ୍ତି ପେଟମରା ରୋଗ ଧଇଲା
ଖୋସାମତି କରି ନହେଲେ ହେବି ମୁଁ ଦୁଆରୀ
କିଛି ନପାରିଲେ ଟାଣିବିତ ସିନ୍ ଦଉଡ଼ି ।୧।

ଚୋରା ଚିଠି ଖାଲି ଲେଖି ଲେଖି ତୋର ପାଖକୁ
ଡେଇଁ ପାରିଲିନି ଏକାଦଶ ଶ୍ରେଣୀ ବଂଧକୁ
ତୋପେଇଁ ହେଲି ମୁଁ ହତାଶିଆ ପ୍ରେମ ଭିକାରି
ନାଲି ପାନ ବିବି ପଛେ ମୁଁ ଗୋଲାମ ଠିକିରି ।୨।

# ୪୩

ମୁଁ ତ ଶଶୁର ଘରକୁ ଜୋଇଁ
ଯାଇଥିଲି ଦିନେ ପୁନେଇଁ ଖାଇ ।୦।

କାଞ୍ଚନ ଥାଳିରେ ସରୁ ଚକୁଳି
ଅରୁଆ ଚାଉଳ ବାସନା ଖିରୀ
ଶରଧାରେ ବାଢ଼ିଥିଲା ନେତିରି
କଥା କହିବାରେ ବଡ଼ ଚତୁରୀ
ହିସାବରେ ଆମ ଘରଣୀ ରାଣୀଙ୍କ
ଅଲିଅଳି ଜେମାଦେଇ ।୧।

ଶଶୁର ଘରୁ ମୁଁ ଅଇଲି ଫେରି
ନୂଆ ଧୋତି ସରୁ ଚଦର ବେଢ଼ି
ଢଂଗ ରଂଗ ମୋର କି ବୁଝିପାରି
ଘରଣୀଙ୍କ ଆଖି ହୋଇଲା ନାଲି
ନାଗୁଣି ପରିକା ଫଁ ଫଁ ହେଲେ
ମୁଣ୍ଡ ମୋ ମାରିଲା ଝାଇଁ ।୨।

# ୪୪

ମୁଁ ପୋଷିଲି ଶୁଆ ଗୋରୀ　　　ତୁ ପୋଷିଲୁ ଶାରୀ
ଆମ ଦୁହିଁଙ୍କର ସଖୀ ଏକଇ ପଂଝୁରୀ ।୦।

ମୁଁ ଆଣିଲି ଫଳମୂଳ　　　ତୁ ଆଣିଲୁ ଖୀର
ମୁଁ କାଢ଼ିଲି ବାଟୁ କଣ୍ଟା　　　ତୁ ତୋଳିଲୁ ଫୁଲ
ହସିତ ଉଠିଲା ଆମ ସୁନାର ସଂସାର
ଶୁଆ ମୋ ଗାଇଲା ଗୀତ　　　ନାଚିଲା ତୋ ଶାରୀ
ଆମ ଦୁହିଁଙ୍କର ସଖୀ ହସିଲା ପଂଝୁରୀ ।୧।

ମଢ଼ିଆ ଦୁଆରେ ଯେବେ　　　କାଟି ତିନି ଗାର
ମୁଁ ଗଲି ବିଦେଶ ସହୀ　　　ତୁ ଜଗିଲୁ ଘର
ଫେରି ମୁଁ ଦେଖିଲି ହାଏ　　　ବୁଡ଼ିଛି ସଂସାର
ଶୁଆ ମୋ ଯାଇଛି ଉଡ଼ି　　　ଯାଇଛି ତୋ ଶାରୀ
ଆମ ଦୁହିଁଙ୍କର ସହୀ ଭାଙ୍ଗିଛି ପଂଝୁରୀ ।୨।

## ୪୫

ତୁତ କୁଆଁର ପୁନେଇଁ କୁଆଁରୀ

ମୁଁ ତ ଶିରୀପଂଚମୀର କୁଆଁର

ତୋର ମୋର ଭାବ ଅଭାବ କାହିଁକି

କଥାର ଦେଉନୁ ଉତ୍ତର ।୦।

ତୁ ହୋଇଲୁ ଯେବେ ଫଗୁଣ ଫଗୁଲୋ

ଫଗୁ ଦୋଳେ ମୁଁ ତ ନାଟୁଆ

ତୁ ଫୁଟିଲୁ ଯେବେ ଚଇତି ମଲ୍ଲୀଲୋ

ଚଇତି ପାଟେ ମୁଁ ପାଟୁଆ

ଚତୁର ବିନୋଦ ଚତୁରୀଲୋ ତୋର ବଢ଼ିଲା କାହିଁକି ଚାତର ।୧।

ବଇଶାଖି ତୁଠେ ବିଶାଖା ତୁ ହେଲୁ

ମୁଁ ତ ହେଲି ସଖି ତୁଠିଆ

ଆଷାଢ଼ କିଆର ବାସ ଚୋରଣିତୁ

ମୁଁ ତ ମନ ଚୋର ଛାଟିଆ

ଯମୁନା କୂଳରେ ରାସ ରସେ ରସି ରସରେ ହେଲୁତୁ ଆତୁର ।୨।

# ୪୬

ରଗ ରଗ ହୋଇ ଆଉ କରନା ତୁ ଜିଗର
କଥା ଦେଲି ମକରକୁ ନେଇଯିବି ମୁକର ।୦।

ଭଡ଼ାଘର ଖଣ୍ଡିପରା ହୋଇନାହିଁ ଛପର
ଟପର ଟପର ମେଘ ପଡ଼େ ଘର ଭିତର
ଓଦା ଜୁଡୁବୁଡୁ ହୁଏ ଶେଯ ମାଠ ଚଦର
ତୁ କିଲୋ ପାରିବୁ ଚଳି ହୋଇ ଶୀତେ କାତର ।୧।

ଛାପା ଶାଢ଼ୀ ନାଇବୁଲୋ ଫୁଲଥିବ ଟଗର
କାନ ବାଲା ଆଣିଦେବି ମୁହଁଥିବ ମଗର
ଗଳାକୁ ତୋ ମୀନା କରା ମଣିପୁରୀ ହାର
ବଢ଼ା ଦରମାଟା ଖାଲି ମିଳିଯାଉ ଏଥର ।୨।

# ୪୭

ବାଡ଼ିରେ ତ ଡେଙ୍ଗା ସଜନା ଗଛକୁ ଘରେ ଏଣେ ଗେଡ଼ୀ ବହୂ
ଛୁଇଁ ପାରିବାକୁ ନଗି ବଢ଼ାଇଲେ ଦିନଗଲା ଚାହୁଁ ଚାହୁଁ ।୦।

ଓରାକୁ ହାତତ ପାଇଲାନି ବୋଲି ଲୁଗା ଟାଙ୍ଗିବାକୁ ଟାଣ
ଶିକାକୁ ହାତତ ବଢ଼ାଇ ବଢ଼ାଇ ଆଣି ପାରିଲାନି ଆଣ
ଥାକକୁ ହାତତ ପାଇଲାନି ବୋଲି
ପିମ୍ପୁଡ଼ି ଖାଇଲେ ମହୁ ।୧।

ଶିଡ଼ି ଫଳିକୁତ ଗୋଡ଼ ପାଇଲାନି ଅଲିପା ରହିଲା ଘର
ଅମାର ପଟାକୁ ଗୋଡ଼ ପାଇଲାନି ପକେଇବା ପାଇଁ ଚାର
ଗେହ୍ଲୀ ବହୂ ବୋଲି ସବୁ କାମକୁତ
ଶାଶୁ କହେ ଥାଉ ଥାଉ ।୨।

ତୋତେ ଛାଡ଼ି ଆହା କିମିତି ଜୀଇଁବି ପଇସା ମୋର
ତୋ ବିନା ସଂସାର ଅସାର ସିନାରେ ପଇସା ମୋର ।୦।

ତୋତେ ପାଇ ସିନା ଗଢୁଛି କିଏରେ ତିତାଲା କୋଠା
ତୋତେ ପାଇ ସିନା ଖାଉଚି କିଏରେ ଆରିସା ପିଠା
ତାର ବିନା ଆହା ଛାଇ ପାରୁନି ମୋ ଛପର ଘର...ରେ
ପଇସା ମୋର
ଔଷଧ ପାନେବି କିଣି ପାରୁନିରେ ଛାଡୁନି ଜର...ରେ
ପଇସା ମୋର ।୧।

ଯେତେ ପାଏ ଯିଏ କାମିନୀ କାଂଚନ ଅଭାବ ନାହିଁ
ଧରାଟାକୁ ସିଏ ସରା ଭାବି ବସେ ତୋହରି ପାଇଁ
ତୋର ବିନା ଆହା ଫଟା କାଚ ନାଏ ଘରଣୀ ମୋର...ରେ
ପଇସା ମୋର
ତୋର ବିନା ହେଲା ପୋଡ଼ା ପାଉଁଶ ମୋ ସୁନା ସଂସାର...ରେ
ପଇସା ମୋର ।୨।

# ୪୯

ଶଗଡ଼ ଚାଲିଛି କେଁ କଟରଲୋ    ତଳମାଳ ଗାଆଁ ଡେଇଁ
ଶଗଡ଼ିଆ ଭାଇ ମନ ଉଚ୍ଚାଟଲୋ    ଚାହିଁଥିବ ଚାନ୍ଦ ମୁହିଁ  ।୦।

ଭାତ ଫୁଟୁଥିବ ଟକର ମକର    ପେଜ ପଡୁଥିବ ଛିଟି
ବାଉଁଶ ନଳରେ ଚାନ୍ଦ ଗୋରୀ    ତାର ଚୁଲି ଦେଉଥିବ ଫୁଙ୍କି
ଗଜ କପାଳରୁ ଝାଳ ଥୋପି ଥୋପି ଧୀରେ ଯାଉଥିବ ବୋହି  ।୧।

ବାଉଆଁ ବଳଦ ମଠୁଆ ବୋଲିକି    ଲାଂଜଟାକୁ ଦିଏ ମୋଡ଼ି
ସୁନା ଗୋରୀ ମିଠା ସିନିହ ବଚନ    ମନରେ ଯାଉଚି ପଡ଼ି
ଉଚ୍ଚାଟ ମନରେ ପଣତ ବିଛେଇ    ବସିଥିବ ବାଟ ଚାହିଁ  ।୨।

ଢାଉ ଘସି ଘସି ମୁଗୁନି ଶିଳରେ
ହାତ ରଂଗେଇଲୁ ବସି
ବଅସ ଶିଳରେ ମନ ଘସି ଘସି
ଓଠ ରଗେଂଇଲୁ ହସି
ଆଲୋ ମା...କଅଁଳିଆ ଆମ୍ବ କଷି ।୦।

ହଳଦି ତେଲରେ ଦେହମାଠି ହେଲୁ ସିନ୍ଥାଣି କାଟିଲୁ ବଂକା
ଆଖିରେ ନାଇଲୁ କଳା କଜଳ ଲୋ ହାତରେ ଦକ୍ଷିଣି ଶଂଖା
ଶରଧା ପାଇକି ଅଳତା ଧାରେ ମୁଁ ପାଦରେ ଦେବାରୁ ନେସି
ଦମ ଦମ ହୋଇ ଚାଲି ଗଲୁ ଦୂରେ ନାକ ଫୁଲେଇଲୁ ରୁସି
ଆଲୋ...ମୋ କଅଳିଆ ଆମ୍ବ କଷି ।୧।

ଶାଢ଼ୀତୁ ନାଇଲୁ ସମ୍ବଲପୁରୀଲୋ ଧାଡ଼ି ଧାଡ଼ି କୁମ୍ଭ ଧଡ଼ି
ବାରହାତୀ କେଶ ଫିଟେଇ ଦେଇତୁ ଶୁଖେଇଲୁ କେରି କେରି
ଶରଧା ପାଇକି ବଉଳକଢ଼ିଟେ ଖୋସାରେ ଦେବାରୁ ଖୋସି
ଗର ଗର ହୋଇ ଚାଲିଗଲୁ ଦୂରେ ଉଂଚେଇଲୁ ଖଡ୍ଗୁମୁଷି
ଆଲୋ...ମୋ କଅଳିଆ ଆମ୍ବ କଷି ।୨।

# ୫୧

ଗୋପ ଅଦାଲତେ ଆଜି ମନଚୋରୀ ମକଦ୍ଦମା
ରାଧାତ ମୁଦେଇ ହେଲା ମୁଦାଲା କାଳିଆ କାହ୍ନା ।୦।

ରାଧା ପକ୍ଷ ଓକିଲ ଯେ ଛଇଳି ନାଗରୀ ଦୂତୀ
ଅଦାଲତେ କହେ କାହ୍ନା କରୁଛି ଯେ ଚୋରା ପ୍ରୀତୀ
ଗୁଆଳିଏ ଭୟେ ଆଉ ଯାଉ ନାହାନ୍ତି ଯମୁନା
ବଂଇଶୀରେ ରାଧା ରାଧା ଡାକିବାକୁ ହେଉ ମନା ।୧।

କହ୍ନେଇ ପକ୍ଷ ଓକିଲ ରାଧିକାର ପ୍ରେମଚିଠି
କେତକୀ ପାଖୁଡ଼ା ଥୋଇ କହେ ଅଦାଲତ ଡାକି
ରାଧା ହାତଲେଖା ଚିଠି ପଢ଼ାଯାଇ ହେଉ ଶୁଣା
ସେଇଥିରୁ କିଏ ଦୋଷୀ ସହଜରେ ହେବ ଜଣା ।୨।

ଆଲୋ ଅଷାଢୁଆ ଜାମୁ କୋଳି
ତୋଳି ଦେବା ପାଇଁ ଅଳି କରୁଥିଲୁ ଏବେ କାହିଁଗଲୁ ଚଳି
(ତୋତେ) ଝୁରି ଝୁରି ମରେ ଖାଲି ।୦।

ମେଘ ବରଷିଲେ ଅସରା ଅସରା ଝପର ଝପର ହୋଇ
ଧାଇଁ ଆସୁଥିଲୁ ଗେଲ ବସରରେ ନସର ପସର ହୋଇ
ହିଡ଼ ମୁଣ୍ଡେ ବସି ଜିଗର କରୁତୁ
ପଣତକୁ ଦାନ୍ତେ ଭିଡ଼ି
ବିହିଡ଼ା ବିଲରେ ହଳ ଠିଆ କରି
ଯାଏ ମୁଁଲୋ କୋଳି ତୋଳି ।୧।

ବରଗଛେ ବଣି ବରଫଳ ଖାଇ କିଚିରି ମିଚିରି ହେଲେ
ଧାଇଁ ଆସୁ ତୁଲୋ କଳସୀ କାଖେଇ ପାଣିତୁ ନେବାର ଛଳେ
କାନେ ମୋର କହୁ ଚୁପୁଚୁପୁ କରି
ହାତରେ ହାତରେ ଠାରି
ବିହିନା ବିଲରେ ଘାଇ ବନ୍ଧା ଛାଡ଼ି
ଯାଏ ପୁଣି ବଣି ଧରି ।୨।

# ୫୩

ଚାଖି ଚାଖି ମୁଁ ତ ଚାକିରୀ କରିଲି
ଚାକିରୀ ସେ ଖାସା ଚାକିରୀ
ଭିତିରି ଭିତିରି ହେଲି ମୁଁ ଘୋଷାରି
କେତେ ଦିନ ଅବା ଯିବି ବଇଁତିରି
ଦରମାକୁ ଛାଡ଼ି ମିଳୁନାହିଁ କିଛି ଉପୁରି ।୦।

ଶଶୁର ଘରର ସଂପତ୍ତିରେ କାଳେ ଦେଖାଉଛି କେତେ ଭାଉରେ
ତହିଁରେ ପୁଣିକି ଟିକିଏ କଥାରେ ଭାସିଯାଉ ଟାଉଁ ଟାଉଁରେ
ବେକକୁତ ମାଳେ ଦେଇ ପାରିଲିନି
ଓଲୋଟି କଲିଣି ବିକିରି
ଛିଇମୋ ମରଦ ପଣିଆ ଯାହାମୁଁ
ଶୁଣୁଛି ଝିକିରି ଝିକିରି ।୧।

ଶଶୁର ଘରର ସାଇକଲ ଚଢ଼ି ବୁଲୁଛି ମୁଁ ଦିନ ସାରାରେ
ବାହାଘର ବେଳ ପଂଜାବୀଟା ଏବେ ହେଲାଣିତ ଫଟା ଚିରାରେ
ସାବୁନୁ କିଣାକୁ ପଇସାଟେ ନାହିଁ
ଏତିକି ବେଳକୁ ଝାଂଜେରି
ରୋକ ଠୋକ ମୋତେ ମନା କଲେ ଆମ
ସ୍ତିରୀ କରିବେନି ଇସ୍ତିରୀ ।୨।

# ୫୪

ସପନେ ଦେଖେ ମୁଁ ତବ ଶାନ୍ତ ମଧୁର ରୂପ
ଚେତନେ କିଂପାଇ ଦେଖା ଦିଅନା
ଭାବନାରେ ତବଛବି ଆଙ୍କିଯାଏ ବୁକୁତଳେ
ଭାଷାରେ ପ୍ରଭୁ ହେ ରୂପ ପାଏନା ।୦।

ଦୂର କାମିନୀ ପରି ଦୂର ସାଗର ସରି ନୀଳିମାର ଭ୍ରାନ୍ତି ପ୍ରଭୁ ମୋ ମନେ
କଲପନା ଶତଦଳ ଚାରୁ ଚନ୍ଦ୍ରଚପଳ କୁହୁକ ଅଂଜନ ମାଖେ ନୟନେ
ତୁଟିବକି ମାୟା ମୋହ
କହ ପ୍ରଭୁ ସତକରି
ଛୋଟ ମନେ କିଛି ଭାବି ପାରେନା ।୧।

ସରିତର କୁଳୁ କୁଳୁ ନିର୍ଝର ଝରଝର ତାନେ ବହିଯାଏ ଯେଉଁ ଗୀତିକା
ବୁଝିମୁଁ ପାରେନା ପ୍ରଭୁ ସେକି ତବ ମୃଦୁ ମନ୍ଦ ମଧୁମୟ ଆହ୍ୱାନ ଲିପିକା
ମାଟିର ମଣିଷ ମୋର
ମମତା ପାଗଳ ମନେ
ଅନ୍ଧ କୁହେଳି ଛାଇ ଦିଅନା ।୨।

# ୫୫

ଏଇ ଦେହ କାଶୀ ତୋର ମନ ବୃନ୍ଦାବନ
ହୃଦୟରେ ବିଜେ ତୋର ଲକ୍ଷ୍ମୀ ନାରାୟଣ ।୦।

ତୋହରି ନୟନେ ବିଜେ ସୂର୍ଯ୍ୟ ଚନ୍ଦ୍ର ତାରା
ରୋମେ ରୋମେ ରାଜଇରେ କୋଟି ତୀର୍ଥ ଧାରା
ଗଂଗା ଯମୁନା ବହଇ ଛୁଇଁ ପଞ୍ଚ ପ୍ରାଣ ।୧।

ତୋହରି ବଚନେ ଭରା ସଂଜୀବନୀ ସୁଧା
ନିଜର କରମ ତୋର ନିଜ କର୍ମେ ବନ୍ଧା
ତୋତେ ତୁହି ରକ୍ଷାକର ଚିନ୍ତି ଚଇତନ ।୨।

# ୫୬

ଆଲୋକ ଦିଅହେ ଆଲୋକଦାତା ତିମିର ନପାରେ ସହି
ପଥ ଦେଖାଅହେ ପଥହରା ପାନ୍ଥେ ଅପଥେ ସଢ଼୍ଛି ରହି ।୦।

ଜୀବନେ ଭରିଛି ହା-ହୁତାଶ ଜ୍ୱାଳା
ନୟନେ ଘେରିଛି ମାୟା ମଦିରା
ତୁଟାଇ ଦିଅହେ ଏ ମମତା ପାଶ ଆଉ ନପାରିବି ବହି ।୧।

ଫିଙ୍ଗି ଦିଅ ପଛେ ଦୂରେ ଠେଲି ମୋତେ
ଗୋଡ଼ାଇ ପଶିବି ତବ ପଦପ୍ରାନ୍ତେ
ଦୂରେ ଦୂରେ ଗଲେ ଅନୁସରିବି ମୁଁ ପଦରଜ ଟିକେ ପାଇଁ ।୨।

# ୫୭

ଭକ୍ତର ଯଦି ଭକତି ନଘେନ ଭକତର ଭଗବାନ
ସୃଷ୍ଟିର ତେବେ ସ୍ରଷ୍ଟା କିପରି ହେବ କୁହ ମହୀୟାନ ?  ।୦।

ଆଲୋକ ଦାତାହେ ଆଲୋକ ନଦେଲ ତିମିରେ ହଜାଇ ମୋତେ
କଲ୍ୟାଣମୟ ଆଶିଷ ନଦେଲ ଜଳିଲି ମୁଁ ଅଭିଶାପେ
ଜୀବନଦାତା ହେ ପରାଣେ ଭରିଲ
ମରଣର କି ଦହନ  ।୧।

ଅମୃତମୟ ମକରନ୍ଦ ବିନ୍ଦୁ ତବ ପଦ ଅରବିନ୍ଦେ
ଝରିଝରିଯାଏ ସୁରଧୂନୀ ସମ ନିତି ସେ ଚରଣ ବନ୍ଦେ
ତଥାପି କାହିଁକି ନିନ୍ଦିତ ମୁଁ ଯେ
ପରାଜିତ ଅନୁକ୍ଷଣ  ।୨।

ଅନ୍ତିମ ଶେଯରେ ଶେଷଇଚ୍ଛା ପ୍ରଭୁ ତବମୁଖ ଦରଶନ
ମରଣ ଆଗରୁ ଶେଷ କଥା ମୋର ଗାଇବି ତୁମର ନାମ ।୦।

ଜୀବନର ମୋର ଶେଷ ପଦଯାତ୍ରା ତୁମରି ମନ୍ଦିରଦ୍ୱାରେ
ଶେଷ ଅଞ୍ଜଳିର କୁସୁମ କେତୋଟି ଅଜାଡ଼ିବି ପଦତଳେ
ଶେଷ ଶୟନେ ମୁଁ ଦେଖିବି ହେ ପ୍ରଭୁ
ତୁମ ମଧୁରୂପ ସ୍ୱପ୍ନ ।୧।

ପରାଣ ଦୀପେ ମୋ ଶେଷ ସଂଜ ଶିଖା ତୁମରି ଆରତି କରେ
ଜ୍ୟୋତିହୀନ ଆଖି ଶେଷ ପଲକେ ମୋ ତୁମ ପାଇଁ ଲୁହଢାଳେ
ପଂଚଭୂତ ଆତ୍ମା ପରମ ମୁହୂର୍ତ୍ତେ
ପରମାତ୍ମାରେ ହେଉ ଲୀନ ।୨।

ସରଣୀ ଧାରେ ଧାରେ ତରଣୀ ନେବି ବାହି
ତୁମ ଆଶୀଷ ଆଶେ ଯିବାକୁ ହେବ ଯହିଁ ।୦।

କଣ୍ଟକ ଭରା ପଥେ ସଂକଟ ଆସେ ଯଦି
ବେଦନା ବୋଝ ଯେତେ ମାଥେ ମୋ ଦିଅ ଲଦି
ତଥାପି ଯିବିଦୂରେ ତୁମ ନାମ ଗାଇ ।୧।

ଅକୂଳ ପାରାବାରେ ତୁମେ ହେ ଆଦି କୂଳ
ରୁଦ୍ର ସୁନ୍ଦର ତୁମେ ଭୀମ କାନ୍ତ ମଂଗଳ
କୁଣ୍ଠା କାହିଁକି ସାଇଁ କରୁଣା କଣେ ପାଇଁ ।୨।

## ୬୦

ପରାଣ ତଟିନୀ ମୋର ବହିଯାଏ ଦୂରେ
ମିଶିବାକୁ ପ୍ରଭୁ ତବ କରୁଣା ସାଗରେ ।୦।

ପଥ ମୋ ହେଉ ବା ଯେତେ ଦୁରୁହ ସଂକୁଳ
ଘେରିଯାଉ ଚଉଦିଗେ ଘନ ଅନ୍ଧକାର
ଚାଲିବି ଆଗକୁ ପ୍ରଭୁ ଭୟ ନାହିଁ କାଳେ ।୧।

ଶୁଷ୍କ ମରୁ ହା-ହାକାରେ ଶଯ୍ୟାଗଲେ ଶୁଖି
ବାଲୁକା ପ୍ରାନ୍ତରେ ତବ ପଦଚିହ୍ନ ଦେଖି
ଅନୁ ସରିବି ମୁଁ ପ୍ରଭୁ ମରଣର ପାରେ ।୨।

# ୬୧

ଅପବାଦ ବିଷ ନପିଇ କିଏ ସେ ପିଇଛି କି ପ୍ରେମ ଅମୃତ
ଅପବାଦ ବିଷ, ବିଷନୁହେଁ ସେତ ଅମୃତଠୁ ବଳି ଅମୃତ ।୦।

ଯମୁନା କହୁଛି ସବୁ ନିନ୍ଦାଠାରୁ ପ୍ରୀତିନିନ୍ଦା ରଟେ ଅଧିକ
ରାଧା କହେ କାହ୍ନା ପୀରତିର ନିନ୍ଦା ମହୁଠାରୁ ମିଠା ଅମୃତ ।୧।

ମୋହନ ବଂଇଶୀ ରାଧା ରାଧା ଡାକି ଅପବାଦ ଦିଏ ଯେତକ
ରାଧା କହେ ସେତ ପଦ୍ମମଧୁ ଆଉ ଶର୍କରା ମିଶା ଅମୃତ ।୨।

ଦୁନିଆ କହୁଛି ବିରହ ନିଆଁଠୁ ଅପବାଦ ନିଆଁ ତପତ
ରାଧା କହେ ସେତ ଅଗୁରୁ ଓ ଚୁଆ ଚନ୍ଦନ ମିଶା ଅମୃତ ।୩।

# ୬୨

ପୀରତି ବାସରେ ପ୍ରଦୀପ ଦୁଇ ଏ ଆଖି
ପୀରତିର ସାକ୍ଷୀ ପୁଣି ଏଇ ଦୁଇ ଆଖି ।୦।

ଚାହାଁଣିର ଶର ଯୋଖି ଦେଇ ଏଇ ଆଖି
ପ୍ରିୟ ବୁକେ ଆହା ଆଘାତ ହାଣେ ଏ ଆଖି ।୧।

ମଧୁମିଶା ନିଶା ନିଦରେ ଶୋଇ ଏ ଆଖି
ପ୍ରିୟାରେ ସପନ ନିତି ଦେଖାଏ ଏ ଆଖି ।୨।

ବିରହ ଲୁହରେ ଭିଜି ଭିଜି ଏଇ ଆଖି
କେତେ ପ୍ରଣୟର କାବ୍ୟ ଲେଖେ ଏଇ ଆଖି ।୩।

# ୬୩

ଚପଳ ଫଗୁଣେ ଫଗୁ ବୋଲି ହୋଇ ଚପଳ ଫୁଲର ଅଧର
ବୟସ ଫଗୁଣ କାମନା ରଙ୍ଗରେ ରଙ୍ଗେଇଲା ମୋର ଅଧର ।୦।

ଚପଳ ଫଗୁଣେ ଚପଳ ଭଅଁର ଗୁଞ୍ଜରଣ ତୋଳେ ମଧୁର
ବୟସ ଫଗୁଣେ ମନର ଭଅଁର ଚୁମିଯାଏ ପ୍ରୀତି ଅଧର ।୧।

ଚପଳ ଫଗୁଣେ ଚପଳ ମଳୟ ଖୋସା ଖୋଲେ ଫୁଲ ବଧୂର
ବୟସ ଫଗୁଣେ ପ୍ରେମର ମଳୟ ଛୁଇଁଯାଏ ମଧୁ ଅଧର ।୨।

ଚପଳ ଫଗୁଣେ ଚପଳ ପୀରତି ନକରେ କାହାକୁ ବିଧୁର ?
ବୟସ ଫଗୁଣେ ପୀରତିର ମଧୁ ନଚାଖେ କି କାର ଅଧର ! ।୩।

# ୬୪

ପ୍ରୀତି ମୋ ଖୋଜୁଛି ନିତି ପ୍ରିୟା ହୃଦ ଆସନ
ପ୍ରୀତି ବିନା ପ୍ରିୟା ବିନା ଶୂନ୍ୟ ହୃଦ ଆସନ ।୦।

ଫଗୁଣ ବାସରେ ପ୍ରୀତି ମଧୁଝରା ଲଗନ
ସେ ଲଗନେ ପ୍ରିୟା ବିନା ଶୂନ୍ୟ ହୃଦ ଆସନ ।୧।

କୋକିଳ କାକଳି ଝରା ରସଭରା ଲଗନ
ଏ ଲଗନେ ପ୍ରୀତିବିନା ଶୂନ୍ୟ ହୃଦ ଆସନ ।୨।

ଫୁଲେ ଫୁଲେ ଅଳିଘୂରେ ମଧୁଲୁଟା ଲଗନ
ପ୍ରୀତି ପ୍ରିୟା ବିନା ହାଏ ଶୂନ୍ୟ ହୃଦ ଆସନ ।୩।

# ୭୫

ପ୍ରେମ କେବେ ରହେନାତ ଛାଡ଼ି ତାର କଳଙ୍କ
ଜୟ ତିଳକ ପ୍ରେମର ନୁହେଁ ସେତ କଳଙ୍କ ।୦।

ପ୍ରେମ ପାଇଁ ଏଇ ଆଖି ଢାଳେ ଯେତେ ଲୋତକ
ସେ ଲୁହ-ଯମୁନା ଧୁଏ ପ୍ରୀତିପଥ କଳଙ୍କ ।୧।

ପ୍ରେମପାଇଁ ଏ ଛାତିରୁ ଝରେ ଯେଉଁ ନିଶ୍ୱାସ
ନିଶ୍ୱାସ ନୁହେଁ ମଳୟ ମହକାଏ କଳଙ୍କ ।୨।

ପ୍ରେମପାଇଁ ଏ ହୃଦୟ ଢାଳେ ଯେତେ ରକତ
ରକ୍ତ ନୁହେଁ କୃଷ୍ଣଚୂଡ଼ା ଫୁଲ ସାଜେ କଳଙ୍କ ।୩।

## ୬୬

ରଜନୀ ଗଂଧାରେ ସାଜେ ମୋ ପ୍ରିୟା ତା’ କବରୀ
କଳପନା ଫୁଲେ ସାଜେ ମାନସୀ ତା’ କବରୀ ।୦।

ଶ୍ରାବଣେ ଯମୁନା ସାଜେ ନୀଳ ଜଳ କବରୀ
ତମାଳବେଶୀ ସୁକେଶୀ ସାଜେ ନୀଳ କବରୀ ।୧।

ବିଭାବରୀ ତରାଫୁଲ ସାଜେ ତାର କବରୀ
ଅଭିସାରିକା କେ ଜାଗେ ସାଜି ତାର କବରୀ ।୨।

ମଧୁରାତେ ପ୍ରୀତିବାଳା ସାଜେ ଲାଜ କବରୀ
ପ୍ରଣୟ ପାଗଳ ମନ ଖୋଜେ ପ୍ରିୟା କବରୀ ।୩।

ପ୍ରିୟତମ ମଧୁ ମନ୍ଦିର ଅଂଗନେ ବାଜିଲୁନି ଯଦି କଙ୍କଣ
କାହିଁକିରେ ମିଛେ ରୁଣୁ ଝୁଣୁ ହୋଇ ବାଜୁ ମୋର କର କଙ୍କଣ ।୦।

ପ୍ରିୟତମ ବୁକୁ ଚମକି ନଯାଏ ଶୁଣି ଯଦି ମୋର କଙ୍କଣ
ଅଭିସାର ପଥେ ରୁଣୁ ଝୁଣୁ ବାଜୁ କାହିଁକିରେ ମିଛେ କଙ୍କଣ ।୧।

ଚନ୍ଦ୍ରଭାନୁ ସମ ପ୍ରିୟ ଅଙ୍ଗେ ଯଦି ବେପଥୁ ନଆଣେ କଙ୍କଣ
ଲାବଣ୍ୟବତୀ ମୁଁ ସାଜି କହ କିଆଁ ବଜାଇବି କର କଙ୍କଣ ।୨।

କାହ୍ନାପରି ପ୍ରିୟ ରାସ କୁଞ୍ଜେ ଯଦି ନବାଜେ ମୋ କର କଙ୍କଣ
ଛଇଳି କିଶୋରୀ ରାଇ ପରି କିଆଁ ସଜାଇବି କର କଙ୍କଣ ।୩।

ତୁମ ନୀଳ ବେଣୀ ଯମୁନାରେ ଭାସେ ମୋ ମନ କାମନା କଦମ୍ବ
ମୋ ଆଖିର ଏଇ ଶ୍ରାବଣ ଧାରାରେ ଫୁଟାଅ ଗୋ ଭୂରୁ କଦମ୍ବ ।୦।

କାହ୍ନା ବଂଶୀ ସୁରେ ରାଇ ମନବନେ ଫୁଟୁଥିଲା ପ୍ରୀତି କଦମ୍ବ
ମୋ ମରମ ବୀଣା ରାଗିଣୀର ତାନେ ଫୁଟାଅଗୋ ପ୍ରୀତି କଦମ୍ବ ।୧।

ନବ ଆଷାଢ଼ରେ ନବ ଅନୁରାଗେ ଫୁଟଇ କାନନେ କଦମ୍ବ
ମୋ ମନ ଆକାଶେ ଆସିଛି ଆଷାଢ଼ ଫୁଟାଅଗୋ ପ୍ରୀତି କଦମ୍ବ ।୨।

ଯମୁନାର ଜଳେ ଭାସି ଭାସିଯାଏ ଗୋପବାଳା ଆଶା କଦମ୍ବ
ମୋ ଆଖିର ଲୁହ ଯମୁନା ସୁଅରେ ଭସାଅଗୋ ପ୍ରୀତି କଦମ୍ବ ।୩।

# ୬୯

କୋଣାର୍କ ଏକ ଅକ୍ଷୟ ହାହାକାର
କୋଣାର୍କ ଏକ ରହସ୍ୟ ଅଂଧକାର ।୦।

କୋଣାର୍କ ଏକ ଶିଳ୍ପୀର ଚାରୁଶାଳା
କୋଣାର୍କ ଏକ ପ୍ରଣୟ ରାସଲୀଳା
କୋଣାର୍କ ଏକ ରକ୍ତର ଶତଦଳ
କୋଣାର୍କ ଏକ କୀର୍ତ୍ତିର ଜୟମାଲ୍ୟ ।୧।

କୋଣାର୍କ ପୁଣି ଧରମା ବଧଭୂମି
କୋଣାର୍କ ପୁଣି ତୀବ୍ର ଈର୍ଷାବହ୍ନି
କୋଣାର୍କ ଆଜି ଶୂନ୍ୟ ଗନ୍ତାଗାର
କୋଣାର୍କ ଆଜି ଧ୍ୱଂସର ପାରାବାର ।୨।

ବିରହ ନିଆଁରେ କୁହୁଳି କୁହୁଳି ବୁକୁରୁ ଉଠେ ଯେ କୋହ
ପୀରତିର ଧୂପ ବାସେ ମହ ମହ ଜଳି ଜଳି ସେଇ କୋହ ।୦।

ଅଳିର ଗୁଂଜନ ଶୁଣି ଫୁଲ ମନେ ଭରିଦିଏ ପରିଣୟ
ହେଲେ ସେ ଗୁଂଜନ କେତକୀର ମନେ ଭରିଯାଏ ଖାଲି କୋହ ।୧।

ଜୋଛନା ଝରିଲେ ପୀରତି ଆତୁର କୁମୁଦର ହୁରୁଦୟ
ହେଲେସେ ଜୋଛନା ଚକୋରୀ ବୁକୁରେ ଭରିଦିଏ ଖାଲି କୋହ ।୨।

କୋହ ନୁହେଁ ସେତ ପୀରତିର ଅନ୍ଧ ଆଖିର ତାତିଲା ଲୁହ
ହେଲେବି ବିରହୀ ଆକୁଳ ପରାଣେ ସାନ୍ତ୍ୱନା ଏଇ କୋହ ।୩।

# ୭୧

ଚିଠି କ'ଣ ଲେଖାହୁଏ ମନ ଭୋକ ମାରିବାକୁ
ଚିଠି କ'ଣ ଲେଖାହୁଏ ଚୋରା ପ୍ରେମ କରିବାକୁ ।୦।

ଚିଠି କ'ଣ ଲେଖାହୁଏ ଦିବା ସ୍ୱପ୍ନ ଦେଖିବାକୁ
ଚିଠି କ'ଣ ଲେଖାହୁଏ ରାତିସାରା ଜାଗିବାକୁ
ଚିଠି ବିତ ଲେଖାହୁଏ ତେଲଲୁଣ ଦୁନିଆକୁ...ବୁଝିବାକୁ ।୧।

ଚିଠି କ'ଣ ଲେଖାହୁଏ ଫୁଲ ଆଉ ଭଅଁରକୁ
ଚିଠି କ'ଣ ଲେଖାହୁଏ ଜହ୍ନ ଆଉ କୁମୁଦକୁ
ଚିଠି ବିତ ଲେଖାହୁଏ ଲୁହ ଲହୁ ଦୁନିଆକୁ...ବୁଝିବାକୁ ।୨।

# ୭୨

ଖୋଲନା ଖୋଲନା ସାଥି ସେ ପାଖ ଝରକା
ଫଗୁଣଟା ଖୋଲି ଦେବ ମୋ ମନ ଝରକା ।୦।

କୃଷ୍ଣଚୂଡ଼ା ଦେଖେ ଯଦି ଖୋଲା ମୋ ଝରକା
ଚୋରାଚିଠି ଫିଙ୍ଗି ଭାଂଗି ଦେବ ମୋ ଝରକା ।୧।

ମଳୟଟା ଦେଖେଯଦି ଖୋଲା ମୋ ଝରକା
ମହକାଇ ଦେବ ମୋର ମନର ଝରକା ।୨।

କୋଇଲିଟା ଦେଖେଯଦି ଖୋଲା ମୋ ଝରକା
ଟାହୁଲିରେ କଂପାଇବ ମନର ଝରକା ।୩।

# ୭୩

ଇନ୍ଦ୍ରପଦ ପାଇଁ ନୁହେଁ ମୋର ଏଇ ତପସ୍ୟା
ତୁମ ପ୍ରେମ ପାଇଁ କରୁଛି କଠୋର ତପସ୍ୟା ।୦।

ତୁମ ପ୍ରେମ ଲାଭ ଏ ଜୀବନେ ଏକ ସମସ୍ୟା
ତା'ର ସମାଧାନ ପାଇଁ ମୋର ଏଇ ତପସ୍ୟା ।୧।

ତୁମ ପ୍ରେମ ହେଉ ପୂର୍ଣ୍ଣିମା ଅବା ଅମାସ୍ୟା *
ତିଥି ନଖୋଜି ମୁଁ କରିଯିବି ଖାଲି ତପସ୍ୟା ।୨।

ତୁମ ପ୍ରେମର ସେ ସରଗକୁ ନାହିଁ ଭରସା
ନରକ ବି ମିଳୁ କରିଯିବି ଖାଲି ତପସ୍ୟା ।୩।

* ଅମାବାସ୍ୟାକୁ ସଂକ୍ଷେପରେ ଅମାସ୍ୟା କୁହାଯାଇଛି ।

# ୭୪

ସବୁ ଧରମକୁ ଛାଡ଼ିଛି ପ୍ରେମକୁ କରିଛି ଧରମ
ସବୁ କରମକୁ ଭୁଲିଛି ପ୍ରେମ ଶିଖାଇଛି ଧରମ ।୦।

ଫୁଲ ଗୁନ୍ଥି ମାଳା କରିବା ଆଗରୁ ଥିଲା ମୋ ଧରମ

ଫୁଲକୁ ଦୂରରୁ ଦେଖିବା
ସୁରଭିରେ ଖାଲି ହଜିବା
ହୋଇଛି ଏବେ ମୋ ଧରମ ।୧।

ତଟିନୀରେ ସ୍ନାନ କରିବା ଆଗରୁ ଥିଲା ମୋ ଧରମ

ନଦୀକୁ ଦୂରରୁ ଦେଖିବା
ତାର କୁଳୁ ଗୀତି ଶୁଣିବା
ହୋଇଛି ଏବେ ମୋ ଧରମ ।୨।

ରଙ୍ଗ ଢାଳି ଛବି ଆଙ୍କିବା ଆଗରୁ ଥିଲା ମୋ ଧରମ

ରଙ୍ଗ ତୁଳି ଦୂରୁ ଦେଖିବା
ରଙ୍ଗ ପାଇଁ ଘାରି ହୋଇବା
ହୋଇଛି ଏବେ ମୋ ଧରମ ।୩।

# ୭୫

ବେପଥୁରେ ହଜି ବିରହରେ ଭିଜି ଘନଘନ ବହେ ନିଶ୍ୱାସ
ପ୍ରେମପଥେ ସିଏ ଫଗୁଣ ମଳୟ କିଏ କହେ ତାକୁ ନିଃଶ୍ୱାସ ।୦।

ପ୍ରିୟ ବୁକୁତଳ ଆତୁର ବିରହ ପ୍ରିୟାମନେ ଦିଏ ବିଶ୍ୱାସ
ସେଇ ବିଶ୍ୱାସ ଯେ ଝରିଝରି ହୁଏ ପ୍ରିୟାର କେତୋଟି ନିଶ୍ୱାସ ।୧।

ପ୍ରିୟା କଣ୍ଠେ ପଦେ କଥା ଶୁଣି ଆହା ପ୍ରିୟ ମନେ ଜାଗେ ଆଶ୍ୱାସ
ଆଶ୍ୱାସ ସେ ନୁହେଁ ଅଭିମାନ ଭଂଗା ନିଶା ମିଶା ଏକ ନିଃଶ୍ୱାସ ।୨।

ପ୍ରିୟା ଓଠେ ଧାରେ ହସ ଦେଖି ତାକୁ ପ୍ରିୟ ମଣେ ଅବା ପୀୟୂଷ
ପୀୟୂଷ ସେ ନୁହେଁ ଭଲ ପାଇବାର ମିଠା ମିଶା ଏକ ନିଃଶ୍ୱାସ ।୩।

# ୭୬

ମୁଁ ଏକ ବିୟୋଗାନ୍ତ ନାଟକର ନାୟକ
ନାୟିକା ମୋ ନାହିଁ ସତ ତଥାପି ମୁଁ ନାୟକ ।୦।

ମୋ ଚଲା ପଥରେ ଖାଲି ଭରିଯାଏ କଣ୍ଟକ
ତଥାପି ମୁଁ ଫୁଲପାଇଁ ସାଜିଛିତ ନାୟକ ।୧।

ଓଠେ ମୋର ହସନାହିଁ ଆଖି ଢାଳେ ଲୋତକ
ତଥାପି ମୁଁ ପ୍ରୀତି ଗୀତି ଗାଇ ସାଜେ ନାୟକ ।୨।

ଚଉଦିଗେ ଅମା ଘେରେ ହଜିଯାଏ ଆଲୋକ
ତଥାପି ଆଲୋକ ଖୋଜି ପାଗଳ ମୁଁ ନାୟକ ।୩।

# ୭୬

ପ୍ରିୟର ଅଂଗନେ ରୁଣୁଝୁଣୁ ହୋଇ ବାଜିଲାନି ଏଇ ନୂପୁର
କି ଲାଭରେ ସହୀ ଅଳତା ରଂଜିତ ପାଦେ ମୋ ସଜାଇ ନୂପୁର ।୦।

ପ୍ରିୟର ହୃଦୟେ ଚମକ ନଦିଏ ଯଦି ଏଇ ଝରା ନୂପୁର
କି ଲାଭରେ ସହୀ ଅଭିସାର ପଥେ ଚରଣେ ଚଳାଇ ନୂପୁର ।୧।

ପ୍ରିୟ ଅଂଗେ ଯଦି ଶିହରଣ ନାହିଁ ତୋଳିଲା ମୋ ଏଇ ନୂପୁର
କି ଲାଭରେ ସହୀ ପ୍ରଣୟିନୀ ସାଜି ଝରାଉ ସୁର ଏ ନୂପୁର ।୨।

ପ୍ରିୟର ତୁଳିରେ ବେପଥୁ ନତୋଳେ ଯଦି ମୋର ରଙ୍ଗ ନୂପୁର
କି ଲାଭରେ ସହୀ କଳାବତୀ ପରି କେଳିପୁରେ ସାଜି ନୂପୁର ।୩।

# ୭୮

ଗୋ ସାରା ନିଶି ସରାଗରେ ଜାଗି ଜାଳିଛି ଆଶାର ପ୍ରଦୀପ
ବାସର ମୋ ଯଦି ବିଫଳ ଆସର କାହିଁକି ଜାଳିବି ପ୍ରଦୀପ ।୦।

କବରୀରେ ସାଜି ରଜନୀଗଂଧା ମୁଁ ସଜାଇ ସିନ୍ଦୂରେ ସୀମନ୍ତ
ସେ ସୀମନ୍ତ ଯଦି ନଛୁଇଁଲ ପ୍ରିୟ କାହିଁକି ଜାଳିବି ପ୍ରଦୀପ ।୧।

କର କଂକଣ ମୋ ରୁଣୁଝୁଣୁ ବାଜି ଗାଏ ତୁମ ପ୍ରୀତି ସଂଗୀତ
ତୁମେ ଯଦି ଗୀତି ରୀତି ନବୁଝିଲ କାହିଁକି ଜାଳିବି ପ୍ରଦୀପ ।୨।

ତୁମରି ଭାବନା ତୁମ କଳପନା ବୁକୁତଳେ ଦିଏ ଚମକ
ଛାତି ତଳ ତାତି ତୁମେ ନବୁଝିଲେ କିଆଁ ମୁଁ ଜାଳିବି ପ୍ରଦୀପ ।୩।

# ୭୯

ପ୍ରିୟା ଯେ ମୋର ପ୍ରଣୟ ମନ୍ଦିରେ ସାଧନା ଦେବଦାସୀ
ପ୍ରିୟା ଯେ ମୋର ଯଉବନ ତୀର୍ଥେ କାମନା ପୁଣ୍ୟକାଶୀ ।୦।

ପ୍ରିୟା ଯେ ମୋର ଜୀବନ ବସନ୍ତେ ରଙ୍ଗୀନ କୃଷ୍ଣଚୂଡ଼ା
ପ୍ରିୟା ଯେ ମୋର ଊଷର ବୁକୁରେ ଆଶାର ଫଲ୍‌ଗୁଧାରା
ପ୍ରିୟା ଯେ ମୋର ହୃଦୟ ଆକାଶେ ମିଳନ ପୂର୍ଣ୍ଣ ଶଶି ।୧।

ପ୍ରିୟା ଯେ ମୋର ତନ୍ଦ୍ରା ନୟନେ ସ୍ୱପ୍ନର ଫୁଲଝରି
ପ୍ରିୟା ଯେ ମୋର ଗଭୀର ନିଶିଥେ ରୂପସୀ ନୀଳପରୀ
ପ୍ରିୟା ଯେ ମୋର ଶ୍ରାବଣ ବାସରେ କୁନ୍ତଳା ଘନକେଶୀ ।୨।

ତୁମ ଚାହାଁଣିର ନିଆଁ ପୋଡ଼ି ଜାଳି କରିଗଲା ମୋତେ ପାଉଁଶ
ମୋ ଦେହ ମଶାଣି ପାଉଁଶ ଗଦାରୁ ତୋଳିନିଅ ମୁଠେ ପାଉଁଶ ।୦।

ତୁମ ରୂପ ନିଆଁ ଝାସରେ ପଛେ ମୁଁ ଜଳି ପୋଡ଼ି ହୁଏ ପାଉଁଶ
ମୋ ପୀରତି ଖାଲି ସୁନା ପରି ଜଳି ଝଟକୁ ନହୋଇ ପାଉଁଶ ।୧।

ତୁମରି ରୋଷର ରୋଷଣିରେ ଜଳି ପୋଡ଼ି ହୁଏ ପଛେ ପାଉଁଶ
ହେଲେ ମୋ ପୀରତି ଫୁଲଝରି ପରି ଝଲସୁ ନହୋଇ ପାଉଁଶ ।୨।

ତୁମରି ନିଶ୍ୱାସ ଅଣଚାଶ ପଛେ ଉଡ଼ାଉ ମୋ ଦେହ ପାଉଁଶ
ହେଲେ ମୋ ପୀରତି ବିଶ୍ୱାସ ଜିଉଁ ନମରି ନହୋଇ ପାଉଁଶ ।୩।

# ୮୧

ପ୍ରେମିକା ଆଖି ଦୁଇ ଅବୁଝା ଶିଳାଲିପି
ପ୍ରେମିକା ଓଠ ଦୁଇ ଫଗୁଣ ଆଣେ ଡାକି ।୦।

ପ୍ରେମିକା ଦେହ ଅଟେ ବିଦଗ୍ଧ ଫୁଲ ବନ
ପ୍ରେମିକା କେଶ ଅଟେ ସବୁଜ ଘନ ବନ
ପ୍ରେମିକ ମନ ମୃଗ ସେ ବନେ ଯାଏ ନାଚି ।୧।

ପ୍ରେମିକା ଭୂରୁ ଦୁଇ ରଂଗୀନ ଇନ୍ଦ୍ରଧନୁ
ପ୍ରେମିକା ସୁରେ ସୁରେ ବାଜେ ପ୍ରଣୟ ବେଣୁ
ପ୍ରେମିକ କାନ ପାତି ଶୁଣେ ସେ ପ୍ରୀତି ଗୀତି ।୨।

## ୮୨

ପ୍ରେମକରି ଯଦି ଭୋଗିବାକୁ ହେବ ପାପ ଅବା ମହାପାପ
ସେଇ ପାପ ମୋର ଧରମଠୁ ବଡ଼ ସେଇ ମୋ ପବିତ୍ର ପାପ ।୦।

ଫଗୁଣକୁ ମାରି ତାଜା ରକତରେ ରଂଗାଇବି ପ୍ରିୟା ଓଠ
ସେଇ ଅପରାଧେ ଭୋଗିବାକୁ ମୋତେ ହେଉ ପଛେ ମହାପାପ
ସେଇ ମୋ ପବିତ୍ର ପାପ ।୧।

ଆକାଶକୁ ମାରି ତାର ନୀଳ ଆଣି ଭରିବି ମୋ ପ୍ରିୟା ନେତ୍ର
ସେଇ ଅପରାଧେ ଭୋଗିବାକୁ ମୋତେ ହେଉ ପଛେ ମହାପାପ
ସେଇ ମୋ ପବିତ୍ର ପାପ ।୨।

ଶ୍ରାବଣକୁ ମାରି ତାର ରଂଗ ଆଣି ରଂଗାଇବି ପ୍ରିୟା କେଶ
ସେଇ ଅପରାଧେ ଭୋଗିବାକୁ ମୋତେ ହେଉ ପଛେ ମହାପାପ
ସେଇ ମୋ ପବିତ୍ର ପାପ ।୩।

# ୮୩

ତୋ ମନ ମୋ ମନ ଜୁଟେଇଲା ଏଇ ଫଗୁଣ
ତୋ ଆଖି ମୋ ଆଖି ଭେଟେଲା ଏଇ ଫଗୁଣ ।୦।

ତୋରା ପ୍ରେମ ମୋତେ ଶିଖେଇଲା ଏଇ ଫଗୁଣ
ତୋରା ଚାହାଁଣିବି ଶିଖେଇଲା ତୋତେ ଫଗୁଣ
ମିଠା ମିଠା ନିଶା ଲଗେଇଲା ଏଇ ଫଗୁଣ
ଦୁଷ୍ଟ ଫଗୁଣ ।୧।

ତୋରା ଚିଠି ମୋତେ ଲେଖେଇଲା ଏଇ ଫଗୁଣ
ତୋରା ହସ ପୁଣି ଶିଖେଇଲା ତୋତେ ଫଗୁଣ
ଧଡ଼ ଧଡ଼ ଛାତି ତାତି ବଢ଼ାଏ ଏ ଫଗୁଣ
ଦୁଷ୍ଟ ଫଗୁଣ ।୨।

## ୮୪

ଭଲଲାଗେ ଅଳପ ପ୍ରୀତି ଭଲଲାଗେ ହସ ଅଳପ
ଭଲଲାଗେ ଆଳାପ ଟିକେ ଭଲଲାଗେ ବାସ ଅଳପ ।୦।

ଭଲଲାଗେ ବିରହ କିଛି ଭଲଲାଗେ ଲୁହ ଅଳପ
ଭଲଲାଗେ ସପନ କିଛି ଭଲଲାଗେ ନିଦ ଅଳପ ।୧।

ଭଲଲାଗେ ଗୁଂଜନ କିଛି ଭଲଲାଗେ ମଧୁ ଅଳପ
ଭଲଲାଗେ କଂପନ କିଛି ଭଲଲାଗେ ସ୍ମୃତି ଅଳପ ।୨।

ଭଲଲାଗେ ଜୋଛନା କିଛି ଭଲଲାଗେ ରାତି ଅଳପ
ଭଲଲାଗେ ବାହାନା କିଛି ଭଲଲାଗେ ରାଣ ଅଳପ ।୩।

# ୮୫

ଭଲ ପାଇବାଟା ଏ ଜୀବନେ ଯଦି ହୋଇଥାଏ ଏକ ଭୁଲ୍
ଭଲପାଇବି ମୁଁ ବାର ବାର ଏଥି ବାର ବାର କରି ଭୁଲ୍ ।୦।

କଣ୍ଟାର ଆଘାତ ସହିବାକୁ ହୁଏ ତୋଳିବାକୁ ଗଲେ ଫୁଲ
ସେଥି ପାଇଁ କିଆଁ ଫୁଲ ତୋଳା ହେବ ଖୁବ୍ ବଡ଼ ଏକ ଭୁଲ୍ ।୧।

ଅପବାଦ ଶୁଣେ ରାଧା ନିତି ନିତି ଯାଇ ଯମୁନାର କୂଳ
ସେଥି ପାଇଁ କିଆଁ ପାଣି ଅଣା ହେବ ଖୁବ୍ ବଡ଼ ଏକ ଭୁଲ ।୨।

ସପନରେ ଯଦି ମିଳନ ନହୋଇ ଗଢ଼େ ଖାଲି ଲୁହ ଧାର
ସେଥି ପାଇଁ କିଆଁ ସପନ ଦେଖିବା ହେବ ଏକ ବଡ଼ ଭୁଲ ।୩।

# ୮୬

ଆକାଶରେ ଆଜି କଳାମେଘ ଦେଖି ତୁମ୍ଭ କେଶ ମନେପଡୁଛି
ମେଘ କୋଳେ ପୁଣି ବିଜୁଳି ଦେଖିଲେ ତୁମ୍ଭ ହସ ମନେପଡୁଛି ।୦।

ବଗିଚାରେ ବୁଲି ଗୋଲାପ ଦେଖିଲେ ତୁମ୍ଭ ଗଭା ମନେପଡୁଛି
କୋଇଲି ଗାଇଲେ କୁହୁ କୁହୁ ଗୀତି ତୁମ୍ଭ ସୁର ମନେପଡୁଛି ।୧।

ଫୁଲ ସାଥେ ଦେଖି ପ୍ରଜାପତି ଖେଳ ତୁମ୍ଭ ପ୍ରୀତି ମନେପଡୁଛି
ଚାନ୍ଦିନୀ ରାତିରେ ନିଶିଗଂଧା ଦେଖି ଅଭିସାର ମନେପଡୁଛି ।୨।

ବନ ହରିଣୀର ଚାହାଣି ଦେଖିଲେ ତୁମ୍ଭ ଆଖି ମନେପଡୁଛି
ରାଜହଂସୀ ଯେବେ ଢଳି ଢଳି ଯାଏ ତୁମ୍ଭ ଚାଲି ମନେପଡୁଛି ।୩।

# ୮୭

ମୁଁ ଚାହୁଁଛି ଖାଲି ତୋ ପ୍ରୀତିକୁ ତୋର ପ୍ରୀତିକୁ
ମୁଁ ଚାହୁଁଛି ଖାଲି ତୋ ମନକୁ ତୋର ମନକୁ ।୦।

ମୁଁ ଚାହୁଁନି ଯିବାକୁ ସ୍ୱର୍ଗକୁ ଅବା ନର୍କକୁ
ମୁଁ ଖୋଜୁନି ନେବାକୁ ପୁଣ୍ୟକୁ ଅବା ପାପକୁ
ମୁଁ ଖୋଜୁଛି ଖାଲି ତୋ ପ୍ରୀତିକୁ ତୋର ମନକୁ ।୧।

ମୁଁ ଚାହୁଁନି ଖାଇବି ସୁଧାକୁ ଅବା ବିଷକୁ
ମୁଁ ଖୋଜୁନି ନେବାକୁ ଯଶକୁ ଅବା ନିନ୍ଦାକୁ
ମୁଁ ଖୋଜୁଛି ଖାଲି ତୋ ପ୍ରୀତିକୁ ତୋର ମନକୁ ।୨।

# ୮୮

ଯଉବନ ମୋର ବାଦସାହୀ ମନେ    ରଂଗ ରସର ଜଲ୍‌ସା
ଯଉବନ ମୋର ତାପସୀର ମନେ    କାମନାହୀନ ତପସ୍ୟା ।୦।

ଯଉବନ ମୋର ମନର ଫଗୁଣେ    ମାଦକଭରା ଗୁଂଜନ
ଯଉବନ ମୋର ମନର ଶ୍ରାବଣେ    କଜ୍ଜଳମେଘ ବର୍ଷଣ
ଯଉବନ ମୋର ମନ ଆକାଶର    ସବିତା ଦୂରେଇ ତମସା ।୧।

ଯଉବନ ମୋର ମନର ମରୁରେ    ଫୁଟନ୍ତ ଏକ ଗୋଲାପ
ଯଉବନ ମୋର ଜୀବନ ବୀଣାରେ    ସଂଚିତ ଟିକେ ଆଳାପ
ଯଉବନ ମୋର ମନ ନଦୀ ତୀରେ    ତରଣୀ ସେ ଆଶା ଭରସା ।୨।

# ୮୯

ସାତ ମହଲାର କାଚ ଉଆସରେ ସାଜିଛି ମୁଁ ରୂପରାଣୀ
ହେଲେ ଏ ମନ ମୋ ଚାହେଁ ଖାଲି ପ୍ରିୟ ହେବି ତୁମ ମନରାଣୀ ।୦।

ମୋ ଆଖି ଆଗରେ କେତେ ଜରିଫୁଲ କେତେ କାଚ କେତେ ମଣି
ହେଲେ ମନ ଚାହେଁ ତୁମ ବଗିଚାରେ ହେବାକୁ ମୁଁ ଫୁଲରାଣୀ ।୧।

ମୋ କାନରେ ବାଜେ କେତେ ସୁର ଛନ୍ଦ କେତେ ବୀଣା ଜିଣା ବାଣୀ
ହେଲେ ମନଚାହେଁ ତୁମ ମନକୁଂଜେ ହେବି ମୁଁ ଗୋ ପିକରାଣୀ ।୨।

ମୋ ଚାରି ପାଖରେ କୁହୁକର ଖେଳ ଖେଳିଗଲେ ମାୟାବିନୀ
ହେଲେ ମନଚାହେଁ ଯୁଗେ ଯୁଗେ ହେବି ତୁମ ମମତାର ରାଣୀ ।୩।

ରାତ୍ରି ଗୋ ତୁମେ ପ୍ରିୟାର ଚିକୁର ଛାୟା
ରାତ୍ରି ଗୋ ତୁମେ ସାଗରିକା ନୀଳ ମାୟା ।୦।

ରାତ୍ରି ଗୋ ଭର ନୟନେ ପ୍ରିୟା ସ୍ୱପ୍ନ
ରାତ୍ରି ଗୋ ଆଣ ପ୍ରଣୟ ମଧୁ ଲଗ୍ନ
ରାତ୍ରି ଗୋ ଦିଅ ଜ୍ୟୋସ୍ନା ମଦିରା ଛୁଆଁ
ରାତ୍ରି ଗୋ ଜାଳ ବରହୀର ବୁକେ ନିଆଁ ।୧।

ରାତ୍ରି ଗୋ ତୁମେ ପ୍ରିୟାର କଜଳରେଖା
ରାତ୍ରି ଗୋ ତୁମେ ମାନସୀ କୁଙ୍କୁମଟୀକା
ରାତ୍ରି ଗୋ କର ଅଭିମାନିନୀ ମୋ ଜାୟା
ରାତ୍ରି ଗୋ କିଆଁ କୁହନା ଥରେ 'ଆହା' ।୨।

# ୯୧

ଛାତିକୁ ପଥର କରିଲେ କି ହେବ ଆଖି ମୋ ଢାଳୁଛି ଲୁହ
ହେଲେ ତା'ଓଠରୁ ଛୁଟେ ହସ ସୁଅ ଦେଖି ମୋ ଆଖିର ଲୁହ ।୦।

ରାଧା ସିନା ଢାଳେ କାହ୍ନୁ ବିରହରେ ବୁକୁ ଭିଜା ତାତି ଲୁହ
ହେଲେ ଚନ୍ଦ୍ରାବଳୀ ଓଠେ ହସ ଲୋଟେ ଦେଖି ରାଇ ଆଖି ଲୁହ ।୧।

ଜୋଛନା ଝରିଲେ ବିରହ ବିଧୂରା ନଳିନୀ ଆଖିରେ ଲୁହ
ହେଲେ କଇଁଓଠେ ହସର ଲହରୀ ଦେଖି ସେଇ ଆଖି ଲୁହ ।୨।

ମୋ ପ୍ରେମର ଏଇ ପରାଜୟ ଦେଖି ମୋ ଆଖିରେ ସିନା ଲୁହ
ହେଲେ ମୋ ଅତୀତ ପ୍ରେମିକା ହସୁଛି ଦେଖି ମୋର ଆଖିଲୁହ ।୩।

# ୯୨

ପ୍ରିୟା ଓ ପ୍ରଣୟ ଲୁଟିନେଲା ଆହା ଜୁଇଜାଳି ଯେଉଁ ଶ୍ମଶାନ
କୋଟି ପୁଣ୍ୟ ତୀର୍ଥ ମୋ ଜୀବନେ ସେଇ ଶ୍ମଶାନ ।୦।

ମୋ ପ୍ରିୟା ରକ୍ତରେ ରକ୍ତଜବା ଫୁଟି ସୁରଂଜିତ ଯେଉଁ ଶ୍ମଶାନ
କୋଟି କାମନାର ତୀର୍ଥ ମୋ ସେଇ ଶ୍ମଶାନ ।୧।

ମୋ ପ୍ରିୟା କଙ୍କଣ ଝଲସି ଝଲସି ଝଟକଇ ଯେଉଁ ଶ୍ମଶାନ
କୋଟି ପ୍ରେରଣାର ଉତ୍ସ ମୋ ସେଇ ଶ୍ମଶାନ ।୨।

ମୋ ପ୍ରିୟାର ଶେଷ ଅଶ୍ରୁ ବିନ୍ଦୁ ନେଇ ଭିଜିଗଲା ଯେଉଁ ଶ୍ମଶାନ
କୋଟି ଜନମର ପୁଣ୍ୟ ମୋ ସେଇ ଶ୍ମଶାନ ।୩।

# ୯୩

ଗୋରୀ ତୋତେ ଆହା ଦେଖିଲା ଦିନରୁ ମନରେ ଏ ଯେଉଁ ଶୋଷ
ଯେତେ ଦେଖିଲେବି ସେ ଶୋଷ ମେଣ୍ଟୁନି ଆହୁରି ବଢୁଛି ଶୋଷ ।୦।

ଫୁଲ ପାଖୁଡ଼ାରୁ ମହୁ ଶୋଷିବାକୁ ଭଅଁର ମନେ ଯେ ଶୋଷ
ସେଇ ଶୋଷଠାରୁ ଆହୁରି ଅଧିକ ମୋର ଏ ମନର ଶୋଷ ।୧।

କଇଁଫୁଲ ଦେହେ ଲୋଟିପଡ଼ିବାକୁ ଜହ୍ନର ମନେ ଯେ ଶୋଷ
ସେଇ ଶୋଷଠାରୁ ଆହୁରି ଶୋଷିଲା ମୋର ଏ ମନର ଶୋଷ ।୨।

ଦରିଆ ଭିତରେ ଚାରିଆଡ଼େ ପାଣି ହେଲେବି ମେଣ୍ଟେନା ଶୋଷ
ତୋ ରୂପ ଦେଖିଲେ ଏ ମନରେ ଗୋରୀ ସାତ ଦରିଆର ଶୋଷ ।୩।

# ୯୪

ଶ୍ରାବଣରେ ଝରିଯାଏ ଝର ଝର ଶ୍ରାବଣ
ଶ୍ରାବଣ ଝରାଏ ମୋର ଆଖିରୁ ଶ୍ରାବଣ ।୦।

କଦମ୍ବ ଫୁଟାଏ ସୁଖେ ଏ ଘନ ଶ୍ରାବଣ
ମୋ ମନ କଦମ୍ବ କିଆଁ ମଉଳେ ଶ୍ରାବଣ ? ।୧।

ସବୁଜିମା ହସି ଉଠେ ପରଶି ଶ୍ରାବଣ
ମୋ ବିରହ ବାଲୁଚର ଦେଖେନା ଶ୍ରାବଣ ।୨।

ଘନ ଘନ ବିଜୁଳିରେ ଚମକେ ଶ୍ରାବଣ
ବାର ବାର ପ୍ରିୟା ସ୍ମୃତି ଆଣେ ଏ ଶ୍ରାବଣ ।୩।

# ୯୫

ଦୁନିଆ ନକହୁ ତୁମେ ଯଦି କୁହ ଥରୁଟିଏ ମୋତେ ସୁନ୍ଦରୀ
ଶହେ ସୁନ୍ଦରୀଙ୍କୁ ପାଦେ ଠେଲିଦେଇ କହିବି ମୁଁ ତୁମ ସୁନ୍ଦରୀ ।୦।

ଚନ୍ଦ୍ରଭାନୁ ପାଇଁ ଲାବଣ୍ୟବତୀ ଗୋ ଥିଲା କାଳେ ବଡ଼ ସୁନ୍ଦରୀ
କାହ୍ନୁ ପାଇଁ ପୁଣି ଗୋପବାଳୀ ରାଈ ଛଇଳି ସେ ଥିଲା ସୁନ୍ଦରୀ
ତୁମ ପାଇଁ ଯଦି ଦିନଟିଏ ପାଇଁ ହେବି ମୁଁ ଗୋ ପ୍ରିୟ ସୁନ୍ଦରୀ
ଶହେ ସୁନ୍ଦରୀଙ୍କ ଆଗରେ କହିବି ଶହେଥର ମୁଁ ଗୋ ସୁନ୍ଦରୀ ।୧।

ଦୁଷ୍ମନ୍ତ ଆଖିରେ କାନନ ବାଳିକା ଶକୁନ୍ତଳା ଥିଲା ସୁନ୍ଦରୀ
ନଳକୁ କହିଲା ସୁନାହଂସ କାଳେ ଦମୟନ୍ତୀ ଭାରି ସୁନ୍ଦରୀ
ତୁମ ଆଖିରେ ମୁଁ ମୁହୂର୍ତ୍ତକ ପାଇଁ ଦିଶିବି ଗୋ ଯଦି ସୁନ୍ଦରୀ
ରମ୍ଭା ମେନକାଙ୍କ ଆଗରେ କହିବି ଶହେଥର ମୁଁ ଗୋ ସୁନ୍ଦରୀ ।୩।

# ୯୬

ପ୍ରିୟା ହୋଇ ସିଏ ବୁଝିଲାନି ଯଦି ମୋର ପ୍ରେମ ମୋର ହୃଦୟ
କାହିଁକି ତେବେ ଏ ପ୍ରେମ ପାଇଁ ପୂଜା କି ଲାଭ ତାଇ ଏ ହୃଦୟ ।୦।

ବିରହ ମରୁରେ ଭାଜି ହେବା ପାଇଁ ଯଦି ଖାଲି ଏଇ ହୃଦୟ
ପ୍ରିୟାର ମିଳନ କୁଂଜବନ ପାଇଁ ଆକୁଳ କିଆଁ ଏ ହୃଦୟ ।୧।

କଣ୍ଟାର ଆଘାତେ ବେଦନାର ଲହୁ ରଂଗାଏ ଯଦି ଏ ହୃଦୟ
ପ୍ରିୟା ପଣତର ମଳୟର ଛୁଆଁ ପାଇଁ କିଆଁ ଝୁରେ ହୃଦୟ ।୨।

ମଶାଣିରେ ଖାଲି ପ୍ରଣୟ ଚିତାରେ ଜଳେ ଯଦି ଏଇ ହୃଦୟ
ପ୍ରିୟା ପାଇଁ ପ୍ରେମ ମନ୍ଦିର ତୋଳି ବିଫଳେ ପୂଜେ ଏ ହୃଦୟ ।୩।

# ୯୭

ସବୁ ଭୁଲ ପାଇଁ ମିଳିଗଲା ମୋତେ କ୍ଷମା
ପ୍ରେମ ପାଇଁ ମୋତେ ପ୍ରେମିକା ଦେଲାନି କ୍ଷମା ।୦।

ପାପ ପାଇଁ ମୋତେ ଧରମ ଦେଇଛି କ୍ଷମା
ଭଲ ପାଇବାକୁ ଘୃଣାବି କରିଛି କ୍ଷମା
ପ୍ରେମ ପାଇଁ ହାଏ ପ୍ରେମିକା ଦେଲାନି କ୍ଷମା ।୧।

ଜରା ମୋତେ ଦେଲା ଯଉବନ ପାଇଁ କ୍ଷମା
ମରଣ ଦେଇଛି ଏ ଜନମ ପାଇଁ କ୍ଷମା
ପ୍ରେ ପାଇଁ "ନନ୍ଦ କିଶୋର" ପାଏନି କ୍ଷମା ।୨।